# ଝୁମୁଝୁମୁ କଥା

( ଶିଶୁଗଳ୍ପ ସଂକଳନ )


ରଚନା :

ଡଃ ଉପେନ୍ଦ୍ର ପ୍ରସାଦ ନାୟକ



ଶତଦ୍ରୁ ପ୍ରକାଶନୀ

ଭୁବନେଶ୍ୱର

# ଗୁଲୁଗୁଲୁ କଥା

ଶିଶୁଗଳ୍ପ ସଂକଳନ

ରଚନା :

**ଡାଃ ଉପେନ୍ଦ୍ର ପ୍ରସାଦ ନାୟକ**

ପ୍ରକାଶକ :

**ଶତଦ୍ରୁ ପ୍ରକାଶନୀ**

ୟୁନିଟ୍ - ୯ ଫ୍ଲାଟ୍

ଭୁବନେଶ୍ୱର

**ପ୍ରଥମ ମୁଦ୍ରଣ :**

୧୯୯୦

ମୁଦ୍ରଣ :

ଶ୍ରୀ ନିଶାମଣି ପ୍ରେସ, ଶାସ୍ତ୍ରୀନଗର

ୟୁନିଟ୍ - ୪, ଭୁବନେଶ୍ୱର

ମୂଲ୍ୟ : ନଅ ଟଙ୍କା ମାତ୍ର

## GULUGULU KATHA

Children's Story Collection

Written by :

**Dr. Upendra Prasad Nayak**

Published by :

**SATADRU PUBLICATION**

Unit - IX Flat

Bhubaneswar

**1s Edition :**

1990

Printed at :

**Shree Nishamani Press**

Sastri Nagar, Unit-4, Bhubaneswar

Price : **Rupees Nine only**

# ଗୁଲୁଗୁଲୁ କଥା ବିଷୟରେ ପଦେ

ଶିଶୁ ସାହିତ୍ୟ ରଚନାରୁ ହିଁ ମୋ ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା । ସେହି ଶିଶୁ ସାହିତ୍ୟ ପାଇଁ ମୁଁ ଭିନ୍ନ ଭିନ୍ନ ସମୟରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଦ୍ୱାରା ବିଷୁବ ପୁରସ୍କାର, "ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟ ସମ୍ମିଳନୀ" ଓ "କୁଆଁତାରା" ଶିଶୁ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ତଥା ସମ୍ମାନିତ ହେବା ପରେ ଶିଶୁ ସାହିତ୍ୟ ରଚନା ନିମନ୍ତେ ଅଧିକ ଉତ୍ସାହିତ ହୋଇ ଅଧିକ ଶିଶୁ ସାହିତ୍ୟ ରଚନା ଦିଗରେ ମନ ବଳାଇଛି । ଶେଷ ଜୀବନ ପର୍ଯ୍ୟନ୍ତ ଏହି ଶିଶୁ ସାହିତ୍ୟ ରଚନାରୁ ବିରତ ହେବି ନାହିଁ ବୋଲି ଆଶା ପୋଷଣ କରୁଅଛି ।

ଏହି ଗଳ୍ପ ସଂକଳନ "ଗୁଲୁଗୁଲୁ କଥା"ର ସଂକଳିତ ଗଳ୍ପଗୁଡ଼ିକ 'ମନପବନ', 'ଫୁଲଝରି', 'ମୀନାବଜାର' ଓ 'ନନ୍ଦନ କାନନ' ଆଦି ଶିଶୁ ପତ୍ରିକାଗୁଡ଼ିକରେ ଭିନ୍ନ ଭିନ୍ନ ସମୟରେ ପ୍ରକାଶ ପାଇଥିଲା ଏବଂ ଆକାଶ ବାଣୀ କଟକ କେନ୍ଦ୍ରରୁ ମଧ୍ୟ ପ୍ରଚାରିତ ହୋଇଥିଲା । ଆଜି ସେଗୁଡ଼ିକୁ ସଂକଳିତ କଲାବେଳେ ସଂପୃକ୍ତ ପତ୍ରିକାର ସମ୍ପାଦକ ତଥା ଆକାଶବାଣୀର କର୍ତ୍ତୃପକ୍ଷଙ୍କୁ ସାଧୁବାଦ ନ ଜଣାଇ ରହି ପାରୁନି ।

ଏହି ଶିଶୁଗଳ୍ପ ପୁସ୍ତକଟି ଶିଶୁ ଓ କିଶୋରମାନଙ୍କ ଦ୍ୱାରା ଆଦୃତ ହେଲେ ଖୁସି ହେବି ।

ଉପେନ୍ଦ୍ର ପ୍ରସାଦ ନାୟକ

# ସୂଚୀପତ୍ର



# ରୋଜ ଜଣିଥିଲା ଖେଳ

ଅଜୟ ବାବୁ ଜଣେ ନାମକରା ଡାକ୍ତର । ସରକାରୀ ଡାକ୍ତରଖାନାରେ ଚାକିରି । ଡାକ୍ତରଖାନାରେ ତାଙ୍କ ପାଖରେ ଯେମିତି ଭିଡ଼ ଘରେ ବି ସେମିତି ଭିଡ଼ ।

ଅଜୟ ବାବୁଙ୍କର ଗୋଟିଏ ପୁଅ ଓ ଗୋଟିଏ ଝିଅ । ପୁଅ ବଡ଼, ତା' ନାଁ ରାଜୁ । ଝିଅ ନାଁ ରୋଜ, ସାତ ବରଷର । ରୋଜ ସାନ ହୋଇଥିବାରୁ ଅତି ଅଲ୍ଅଲରେ ବଢ଼ିଥାଏ । ଅଜୟ ବାବୁ ବି ତାକୁ ଭାରି ଗେହ୍ଲା କରନ୍ତି । ଯେତେବେଳେ ଯା' କହେ ତାହା ଆଣି ଦଅନ୍ତି ।

ରୋଜ ମଧ୍ୟ ଖୁବ୍ ଭଲ ପଢ଼େ । ସାତ ବରଷରେ ତୃତୀୟ ଶ୍ରେଣୀରେ ପଢ଼ିଲାଣି । ଅଙ୍କ, ସାହିତ୍ୟ, ଇତିହାସ ସବୁଥିରେ ସେ ଆଗୁଆ । ପରୀକ୍ଷାରେ ବେଶୀ ନମ୍ବର ରଖିଛି ।

ରୋଜର ସାଙ୍ଗ ଲୀନା । ଲୀନା କମଲ ବାବୁଙ୍କ ଝିଅ । କମଲ ବାବୁ ହାଇସ୍କୁଲର ଶିକ୍ଷକ ।

ଦିନେ ରବିବାର ହୋଇଥାଏ । ରୋଜ ଲୀନାକୁ ଡାକି ମାଆଙ୍କୁ କହି, ଆସି ତାଙ୍କ ବାଡ଼ିରେ ଗୋଟିଏ ଡାକ୍ତର ବ୍ୟବସ୍ଥା

କରାଇଲା । ଲୀନା ବି ତା' ମାଆଙ୍କୁ କହି ରୋଜ ସଂଗରେ ମିଶିଥାଏ ।

ଅଜୟବାବୁ ସରକାରୀ ଘର ପାଇଥାନ୍ତି । ଘରର ଚାରି-ପଟକୁ ବିରାଟ ବଡ଼ ବଗିଚା । ସାମ୍ନା ପଟରେ ଫୁଲ ବଗିଚା । ବାମପଟକୁ ଶାଗ, ବାଇଗଣ, ଭେଣ୍ଡି ଆଦି ପରିବା ଗଛ ଲାଗିଛି । ଡାହାଣ ପଟକୁ କଦଳୀଗଛ, ଅମୃତଭଣ୍ଡା ଗଛ ଓ ସଜନା ଗଛ ଲାଗିଛି । ବାଡ଼ିପଟକୁ କିଛି ନାହିଁ । ଖାଲି ପଡ଼ିଆ ପଡ଼ିଛି । କେବଳ ଦୁଇଟି ବରକୋଳି ଗଛ ଓ ଗୋଟିଏ ବେଲଗଛ ।

ସେଇ ବରକୋଳି ଗଛମୂଳେ ଚୁଲି କରି ଭୋଜି କରିବାକୁ ମାଆ ସୁଲତା ଦେବୀଙ୍କ ସଙ୍ଗେ ଜିଦ୍ ଲଗାଇଲା ରୋଜ । ଗେହ୍ଲା ଝିଅ । ତା' କଥା କାଟିପାରିଲେ ନାହିଁ ସୁଲତା ଦେବୀ । ଭୋଜି ବ୍ୟବସ୍ଥା ହେଲା । ଲୀନା ବି ମାଆଙ୍କ ପାଖରୁ କୋଡ଼ିଏ ଟଙ୍କା ଚାନ୍ଦା ଆଣି ଦେଲା ।

ରୋଜ ଓ ଲୀନା ତ ଛୋଟ ପିଲା । ସେମାନେ ରୋଷେଇ କରିପାରିବେ ନାହିଁ । ତେଣୁ ସୁଲତା ଦେବୀ ସବୁ ରୋଷେଇ ବ୍ୟବସ୍ଥା କଲେ । ପିଅନ ହରି ମଧ୍ୟ ସବୁ ଯୋଗାଡ଼ କରିଦେଲା । ଭୋଜିରେ ପଲଉ, ମାଂସ, କ୍ଷୀରି, ଖଟା, ଡାଲି ଓ ସାଧ ତରକାରୀ ଆଦି କରାଗଲା ।

ଠିକ୍ ପାଞ୍ଚଟା ବାଜିଲା । ଅଜୟ ବାବୁଙ୍କର ଡାକ୍ତରଖାନା ଯିବାର ନାହିଁ । ରୋଜ ଆସି ଡାକିଲା ଅଜୟବାବୁଙ୍କୁ ଭୋଜିରେ ଯାଇ ବାଡ଼ିରେ ବସି ଖାଇବାକୁ । ଅଜୟ ବାବୁ ରୋଜର ଭୋଜି କଥା ଶୁଣି ଖୁସି ହୋଇଗଲେ । ଗେହ୍ଲା ଝିଅର କଥା କାଟି ନପାରି ଗଲେ । ବାଡ଼ିରେ ବସି କଦଳୀ ପତ୍ରରେ ଭୋଜି ଖିଆ ହେଲା ।

॥ ୭ ॥

ଭୋଜ ଖାଇ ସାରିବା ପରେ ରୋଜ ପଚାରିଲା - ଡ୍ୟାଡ଼ି ! ଆମ ଭୋଜ କେମିତି ହୋଇଛି ?

ଅଜୟବାବୁ ହସି ହସି କହିଲେ - 'ଖୁବ୍ ଭଲ । ବହୁତ ଭଲ ।'

'ଆମେ ଏବେ ପ୍ରତି ମାସରେ ଥରେ ଭୋଜ କରିବୁ । ଠିକ୍ ହେବ ତ ? ପଚାରିଲା ରୋଜ ।

ରୋଜିର କଥାରେ ହସି ଉଠି ହଁ ଭରିଲେ ଅଜୟବାବୁ ।

ଭୋଜିର ସମସ୍ତେ ଖାଇଲେ । ତଥାପି ଆହୁରି ବହୁତ ମାଂସ ବଳିଥାଏ । ସବା ଶେଷକୁ ଥିଲେ ରୋଜି ଓ ଲୀନା ।



ସେମାନେ ଖାଇଲେ । ବହୁତ ଗୁଡ଼ାଏ ବଳିପଡ଼ିଥିବାରୁ ଖୁବ୍ ବେଶୀ ବେଶୀ ଖାଇଦେଲେ ।

ଠିକ୍ ରାତ ନଅଟା ହେବ ବୋଧହୁଏ । ଆରମ୍ଭ ହେଲା ରୋଗିଙ୍କ ପେଟରେ ଯନ୍ତ୍ରଣା । ଝାଡ଼ା ଓ ବାନ୍ତି । କମଳବାବୁଙ୍କ ଝିଅ ଲୀନାର ବି ସେଇ ଅବସ୍ଥା । କମଳବାବୁ ଲୀନାକୁ ଧରି ଆସି ପହଞ୍ଚିଲେ ଡାକ୍ତର ଅଜୟବାବୁଙ୍କ ପାଖରେ ।

ଅଜୟବାବୁ ରୋଗି ଓ ଲୀନାଙ୍କ ପରୀକ୍ଷା କରି ଦେଖିଲେ କେବଳ ଅସମୟରେ ଅତ୍ୟଧିକ ଖାଇବା ଫଳରେ ଏପରି ହୋଇଛି ।

ଔଷଧ ଦେଲେ । ଦୁହେଁ ଟିକି ଖାଁ ପରିବର୍ତ୍ତନ ଆରୋଗ୍ୟ ଲାଭ କଲେ । ତାପରେ ଅଜୟ ବାବୁ ରୋଗିଙ୍କୁ ଡାକି କହିଲେ - 'ବୁଝିଲୁ ରୋଗି ! ତୁ ଯାହା କହୁଥିଲୁ ପ୍ରତି ମାସରେ ଗୋଟିଏ ଲେଖାଏଁ ଦେଖି କରିବାକୁ କରି । ମୋର କିଛି ଯାଏ ଆସେ ନାହିଁ । କିନ୍ତୁ ଏମିତି ଅଧିକ ଖାଇ ଦେହ ଖରାପ କରିବା ଉଚିତ୍ ନୁହେଁ । ଅଧିକ ଖାଇବା ଦେହ ପକ୍ଷେ ଅହିତକର । ତା'ଛଡ଼ା ଅଧିକ ଖାଇଲେ ଏହିଭଳି କଷ୍ଟ ଭୋଗିବାକୁ ହୁଏ ।'

'ଏ ଭୁଲ ଆଉ ହେବ ନାହିଁ' କହି ଘର ଭିତରକୁ ପଳାଇଲା ରୋଗି ।

ହସି ଉଠିଲେ ଅଜୟବାବୁ ।





## ରମାନାଥ ବଞ୍ଚିଗଲା

କେ[illegible]ାଦେଇପୁର ବୋଲି ଗୋଟିଏ ଗାଁ । ସେହି ଗାଁରେ ଗୋପୀନାଥ ବାବୁଙ୍କ ଘର । ଗୋପୀନାଥ ବାବୁ ଗାଁ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ତାଙ୍କ ନିଜର କିଛି ଜମିଜମା ଥିଲା ଏବଂ ତା'ସାଙ୍ଗକୁ ତାଙ୍କ ଶିକ୍ଷକ ଚାକିରୀରେ ସେ ବେଶ୍ ହସ-ଖୁସିରେ ଚଳିଯାଉଥିଲେ ।

ଗୋପୀନାଥ ବାବୁଙ୍କ ପରିବାର ମଧ୍ୟରେ ତାଙ୍କ ପତ୍ନୀ ସୁମତୀ ଦେବୀ, ବଡ଼ପୁଅ ରମାନାଥ, ସାନ-ଉମାନାଥ ଓ ଝିଅ ମଧୁମତୀ ।

ଗୋପୀନାଥ ବାବୁ ନିଜେ ଶିକ୍ଷକ । ପିଲାଙ୍କୁ ପ୍ରଥମରୁ ଶିକ୍ଷାପ୍ରତି ମନଯୋଗୀ କରାଇବାରେ ଲାଗିଥାନ୍ତି, କାରଣ ସେ ଜାଣନ୍ତି ଯେ ଭଲଭାବେ ବିଦ୍ୟାଶିକ୍ଷା କରିପାରିଲେ ସେମାନଙ୍କ ଭବିଷ୍ୟତ ଜୀବନ ସୁଖମୟ ହୋଇପାରିବ । ଆଖି ଆଗରୁ ଅନ୍ଧାର କାଳିମା ସବୁ ଦୂରେଇ ଯାଇପାରିବ ।

ସେହି ଆଦର୍ଶରେ ନିଜକୁ ନିଜେ ଅନୁପ୍ରାଣିତ ହୋଇ ପିଲ୍ମାନଙ୍କୁ ମଣିଷ କରିବାକୁ ଚେଷ୍ଟା କରୁଥିଲେ ।

ସମୟ କ୍ରମେ ପିଲା ଦୁହେଁ ଗାଁ ହାଇସ୍କୁଲ୍ ପାଶକରି ସହରକୁ କଲେଜରେ ପଢ଼ିବାକୁ ଗଲେ ।

କିନ୍ତୁ ମଣିଷର ସବୁ ଆଶା ବୋଧହୁଏ ଭଗବାନ୍ ପୂରଣ କରିଦିଅନ୍ତି ନାହିଁ ।



ଗୋପୀନାଥ ବାବୁ ସିନା ନିଜେ କଷ୍ଟ ସହି, ନିଜର ସମସ୍ତ ଖର୍ଚ୍ଚବାର୍ଚ୍ଚ କାଟିକରି ସେହି ପିଲାଙ୍କ ପାଖକୁ ମାସକୁ ମାସ ଟଙ୍କା ପଠାଉଥିଲେ ହେଲେ ରମାନାଥ ସେ ଟଙ୍କା ପାଇ ପାଠ ନ ପଢ଼ି ଦୁଷ୍ଟ ପିଲାଙ୍କ ସାଙ୍ଗରେ ସାଙ୍ଗ ହୋଇଗଲା । ତେଣୁ ପାଠ ପଢ଼ିବା ସମୟରେ ଆଜି ସିନେମା ତ କାଲି ଥିଏଟର, ଆଜି

କଲେଜ ରାଜନୀତିରେ ଭାଗନେଲାଣି ତ କାଲି କେଉଁଠି ନାକେ ତାମା ଇତ୍ୟାଦି କରିବାରେ ଲାଗିଲା ।

ଗୋପୀନାଥ ବାବୁ ପୁଅର ଏ ଖରାପ ଆଚରଣ ତଥା ପାଠ-ପଢ଼ାକର ଅମନଯୋଗୀ ହେବାକଥା ଜାଣନ୍ତେ କେମିତି ?

ସାନପୁଅ ଉମାନାଥ କିନ୍ତୁ ଭଲ ପଢ଼ୁଥାଏ । ନିଜ ଖର୍ଚ୍ଚ ବାଦେ ଯାହା ପଇସା ପାଏ ସେଥିରେ ବହି କିଣି ପଢ଼େ ।

ପରୀକ୍ଷା ହେଲା । ପରୀକ୍ଷାରେ ରମାନାଥ ଫେଲ୍ ହେଲା । ଗୋପୀନାଥ ବାବୁ ରମାନାଥ ଫେଲ ହେବା ଜାଣି ଖୁବ୍ ବିଚଳିତ ହୋଇ ପଡ଼ିଲେ । ତଥାପି ପୁଅକୁ କିଛି ଗାଳିଗୁଲଜ ନ କରି ପୁଣି ପରୀକ୍ଷା ଦେବାକୁ କହିଲେ । କିନ୍ତୁ ରମାନାଥ ମୁହେଁ ମୁହେଁ କହିଲା--ଫେଲ ହେଲି, ଆଉ କାହିଁକି ପରୀକ୍ଷା ଦେବ ? ଏଥର ଟଙ୍କା ଦିଅ, ମୁଁ ବ୍ୟବସାୟ କରିବ ।

ଗୋପୀନାଥ ବାବୁ ବଡ଼ ଅଡ଼ୁଆରେ ପଡ଼ିଲେ । ସେ ଏହି ପିଲାଙ୍କ ପାଇଁ ଭବିଷ୍ୟତ ଚିନ୍ତା କରି କେତେ ସୁନେଲି ଆଶା କରିଥିଲେ । ପିଲା ଦୁହେଁ ଭଲ ପଢ଼ିବେ । ବଡ଼ ମଣିଷ ହେବେ । ତାଙ୍କ ନାଆଁ ରଖିବେ । ସୁଖରେ ତାଙ୍କ ଜୀବନ ବିତିବ । କିନ୍ତୁ ଏ କ'ଣ ହେଲା ?

ରମାନାଥକୁ ଯେତେ ବୁଝେଇଲେ ସେ କାହିଁତିରେ ବୁଝିଲା ନାହିଁ । ଶେଷକୁ ଗୋପୀନାଥ ବାବୁ ନିଜର କିଛି ଜମି ବନ୍ଧକ କରି ରମାନାଥକୁ ବ୍ୟବସାୟ କରାଇ ଦେଲେ । କିନ୍ତୁ ଯିଏ ମଣିଷ ନ ହେବ ତାକୁ ମା' ବାପ କ'ଣ କରିବେ ?

ରମାନାଥର ପୂର୍ବ କୁ-ସାଙ୍ଗ ଦଳ ଆସି ମିଶିଗଲେ । ସିନେମା ଦେଖା, ଜୁଆଖେଳ ଆଦିରେ ମାତିଗଲେ । ଫଳରେ ରମାନାଥର ବ୍ୟବସାୟରେ ଲାଭ ପରିବର୍ତ୍ତେ କ୍ଷତି ବଢ଼ି

ଗୃହିଲା । ଗୋପୀନାଥ ବାବୁ ଏ କଥା ଜାଣିଲେ । ଦୁଃଖରେ ଭାଙ୍ଗି ପଡ଼ିଲେ । ରାତରେ ସେହି ଚିନ୍ତାରେ ଶୋଇପାରିଲେ ନାହିଁ । କ'ଣ କରିବେ କିଛି କୂଳକିନାରା ପାଉ ନଥିଲେ । ଯେ ଶେଷକୁ ନିଜର ବନ୍ଧୁମାନଙ୍କ ସହ ଏ ବିଷୟରେ ପରାମର୍ଶ କଲେ । ବନ୍ଧୁମାନେ କହିଲେ--ତାକୁ ବାହାକରେଇ ଦିଅ । ବଡ଼ଲୋକ ଝିଅଟିଏ ଆସିବ । କାନ୍ଧରେ ପଡ଼ିଲେ ବଳେ ବଳେଇ ଶିଖିବ ନା ? ଶେଷକୁ ଗୋପୀନାଥ ବାବୁ ତାହାହିଁ କଲେ କିନ୍ତୁ ଫଳ କିଛି ହେଲାନି ।

ଗୋପୀନାଥ ବାବୁଙ୍କର ସବୁ ଆଶା ଭରସା ପାଣିଫୋଟକା ପରି ମିଳେଇଗଲା ।

ଏହି ଚିନ୍ତାରେ ହଠାତ୍ ଦିନେ ଗୋପୀନାଥ ବାବୁଙ୍କର ହୃଦରୋଗରେ ପ୍ରାଣବାୟୁ ଉଡ଼ିଗଲା ।

ଉମାନାଥ ଗୃହକର୍ତ୍ତା ହେଲା ।

ଏଣେ ରମାନାଥ ଦିନକୁ ଦିନ ଖରାପ ଆଡ଼କୁ ଯାଉଥାଏ । ଉମାନାଥ ଆଉ ବଡ଼ଭାଇ ରମାନାଥର ଏ କୁପ୍ରବୃତ୍ତିକୁ ସହ୍ୟ କରିପାରୁ ନ ଥାଏ । ଦିନେ ସେ ରମାନାଥକୁ ସଚେତନ କରାଇ କହିଲା-- ଦେଖ ଭାଇ, ଏଭଳି ହେଲେ ଆମେ କେମିତି ସମାଜରେ ବଞ୍ଚି ରହିବା । ତୁମେ ସବୁ ଖରାପ ଅଭ୍ୟାସ ଛାଡ଼ି ଭଲ ମଣିଷ ହୋଇ ରୁହ । ଉମାନାଥର ଏ କଥାରେ ରମାନାଥ ରାଗିଯାଇ କହିଲା-ତୁ କ'ଣ ମୋତେ ଶାସନ କରୁଛୁ ? ବେଶ୍ ତୋର ଯଦି ଇଚ୍ଛା ନ ହେଉଛି- ତୁ ତୋର ଅଲଗା ରହ ।

ଉମାନାଥ କହିଲା - ବାପାଙ୍କ ଜମିରୁ ତୁମ ବ୍ୟବସାୟ ଓ ଭଉଣୀ ବାହାଘରରେ ତ ଯାହା ବିକ୍ରି ହୋଇ ଯାଇଛି ଯାଇଛି, ଆଉ ଯାହା ଅଛି ତାକୁ ମୁଁ ଦୁଇଭାଗ କରିବାକୁ ଚାହେଁ ନା । ସବୁ

ଜମି ତୁମେ ନଅ । ମୁଁ ଯାଉଛି । ଭଡ଼ାଘର କରି ରହିବ । ସତକୁ ସତ ତାହାହିଁ ହେଲା । ରମାନାଥ ଭଡ଼ାଘରେ ରହିଲା । ତଥାପି ରମାନାଥର ପରିବର୍ତ୍ତନ ହେଲାନି ।

ରମାନାଥର ସବୁ ଜମିବାଡ଼ି ବନ୍ଧକ ହୋଇଗଲା । ମଦ ଖାଇବା ଫଳରେ ଟି. ବି. ରୋଗରେ ଆକ୍ରାନ୍ତ ହେଲା ରମାନାଥ । ଉମାନାଥ ଏ ଖବର ପାଇ ଆସିଲା । ଔଷଧ ଓ ଖାଦ୍ୟ ଅଭାବରୁ ରମାନାଥର ଜୀବନ ଯିବା ଉପରେ । ରମାନାଥଙ୍କ ସ୍ତ୍ରୀ ଓ ପିଲାମାନେ ଖାଇବା ବିନା ଶୁଖି କଲାକାଠ ଦିଶୁଛନ୍ତି ।

ଉମାନାଥ ସଙ୍ଗେ ସଙ୍ଗେ ରମାନାଥର ଚିକିତ୍ସା ଆରମ୍ଭ କରିଦେଲା । ନିଜ ଦରମାରୁ ସଞ୍ଚିତ ଟଙ୍କାରେ ଭାଇଙ୍କୁ ଚିକିତ୍ସା କରି ଆରୋଗ୍ୟ କରାଇଲା ।

ଏଥର ରମାନାଥ ନିଜର ଭୁଲ ବୁଝିପାରିଲା ।

ଜୀବନରେ ଏ ଭୁଲ କେବେ କରିବ ନାହିଁ ବୋଲି ଶପଥ କଲା ଏବଂ ଦୁଃଖରେ ଭଗବାନଙ୍କୁ ଜଣାଇ କହିଲା - ହେ ଭଗବାନ, ଏ ଦୁନିଆରେ ମୋ ପରି ଭୁଲ ବାଟରେ ଆଉ କେହି ନ ଯାଆନ୍ତୁ ।







# ମଥୁରୀ ଅଜା

ଦାଣ୍ଡମୁକୁନ୍ଦପୁର ଗାଁରେ ମଥୁରୀ ବିଶ୍ୱାଳଙ୍କ ଘର । ବୟସ ତାଙ୍କର ପଚାଶ କି ପଞ୍ଚାବନ ହେବ । ଘରକୁ ତାଙ୍କର କେହି ନାହାନ୍ତି । ତାଙ୍କର ବାପା ମା' ଛୁଆଟି ଦିନରୁ ମରିଯାଇ-ଛନ୍ତି । ଭାଇ ଭଉଣୀ କେହି ନାହାନ୍ତି । କେବଳ ମାମୁଁ ମାଇଁ ଦୁଇ ପ୍ରାଣୀ ।

ମଥୁରୀ ବିଶ୍ୱାଳଙ୍କୁ ଗାଁ ସାରା ଲୋକେ ମଥୁରୀ ଅଜା ବୋଲି ଡାକନ୍ତି । ତାଙ୍କ ସ୍ତ୍ରୀ କମଳାଙ୍କୁ ସମସ୍ତେ ଆଈ ବୋଲି ଡାକନ୍ତି । ପୁଅଟିଏ କି ଝିଅଟିଏ ନାହିଁ ବୋଲି କମଳା ଆଈଙ୍କର ମନ ଭାରି ଖରାପ । କିନ୍ତୁ ମଥୁରୀ ଅଜା ସେକଥା ମୁଣ୍ଡ

ଭିତରକୁ ପୂରାନ୍ତି ନାହିଁ କି ଟିକେ ବୋଲି ମନ ଖରାପ କରନ୍ତି ନାହିଁ । ବରଂ ସେ କହନ୍ତି କୋଉ ପୁଅଝିଅ କାହାର କ'ଣ କରିବ ? ଦୁନିଆରେ ସବୁ ପୁଅ, ଝିଅ, ଆମର । ନିଜ ପୁଅ ଝିଅଙ୍କୁ ଯେତିକି ସ୍ନେହ ଶ୍ରଦ୍ଧାରେ ବଢ଼ାଇଥାନ୍ତି ସେତିକି ସ୍ନେହ ଶ୍ରଦ୍ଧାରେ ଯେଉଁ ପୁଅ ଝିଅଙ୍କୁ ଭଲ ପାଇଲେ ସେ ବି ସେତିକି ଆପଣାର ହେବେ । ଏସବୁ ବିଷୟରେ ମନ ଖରାପ ନକରିବା ପାଇଁ ମଥୁରୀ ଅଜା ଆଈଙ୍କୁ ବହୁବାର ବୁଝାଇଛନ୍ତି । କିନ୍ତୁ ସେଥିରେ କମଳା ଆଈଙ୍କ ମନ ବୁଝେନି ।



ମଥୁରୀ ଅଜା ଭାରି ପରୋପକାରୀ । ପରପାଇଁ ଜୀବନ ଗଲେ ବି ତାଙ୍କର ଦୁଃଖ ନାହିଁ । ଗାଁ ଲୋକଙ୍କ ଭଲ ମନ୍ଦରେ

ସାହାଯ୍ୟ ଅର୍ପିବା ଲୋକ ହେଉଛନ୍ତି ମଥୁରୀ ଅଜା । ଏଥିପାଇଁ ସେ କାହାରି ପାଖରୁ କିଛି ପାରିଶ୍ରମିକ ବି ନିଅନ୍ତି ନାହିଁ ।

ମଥୁରୀ ଅଜା ପ୍ରତିଦିନ ବସ୍ ଷ୍ଟାଣ୍ଡରେ ବହି ଓ ପତ୍ରିକା ବିକାବିକି କରି ଯାହା ଲାଭ ପାଆନ୍ତି ସେଥିରେ ସେ ଓ କମଳା ଆଈ ସୁଖେ ଦୁଃଖେ ଚଳିଯାଆନ୍ତି ।

ଦିନକର କଥା । ସେଦିନ ସଞ୍ଜବେଳେ ମଥୁରୀ ଅଜା ବସ୍ ଷ୍ଟାଣ୍ଡକୁ ଯାଉଯାଉ ବାଟରେ ଭୀଷଣ ଝଡ଼ ତୋଫାନ ହେଲା । ରାସ୍ତାରେ ଗଛ ବୃକ୍ଷ ଭାଙ୍ଗି ପଡ଼ିବା ଦ୍ୱାରା ରାସ୍ତାରେ ଚଳାପ୍ରଚଳ ବନ୍ଦ ହୋଇଗଲା । ମଥୁରୀ ଅଜା ଆଉ ବସ୍ ଷ୍ଟାଣ୍ଡକୁ ନଯାଇ ଘରକୁ ଫେରି ଆସିବାକୁ ଚେଷ୍ଟା କଲେ, କିନ୍ତୁ ସେ ଫେରି-ଆସୁଛନ୍ତି ବା କିପରି ? ଝଡ଼ରେ ବିଜୁଳି ଆଲୁଅ ଲିଭିଯାଇଛି । ଅନ୍ଧାରରେ ମୁହଁକୁ ମୁହଁ ଦିଶୁନି । ଭୀଷଣ ଝଡ଼ତୋଫାନ ସହିତ ବରଷା ଚୋପା ତୀର ମାରିଲା ପରି ଦେହରେ ଫୋଡ଼ି ହୋଇ ଯାଉଥାଏ । ସେପରି ଅବସ୍ଥାରେ ପାହୁଣ୍ଡେ ପାଦ ଆଗକୁ ପକାଇବା ବି ସମ୍ଭବ ହେଉ ନଥାଏ । ତଥାପି ସେଥିରେ ଡିନ୍ତି-ବୁଡ଼ି ବହୁ କଷ୍ଟରେ ଗାଁକୁ ଫେରି ଆସିଲେ । ମଥୁରୀ ଅଜା ଓଦା କୁଡୁବୁଡୁ ହୋଇ ଆସି ଗାଁରେ ପହଞ୍ଚି ଦେଖନ୍ତି ତ ରାସ୍ତାରେ ସବୁ ଗଛ ଶୋଇଛି । ଅନେକ ଲୋକଙ୍କ ଚାଳ ଭାଙ୍ଗି ଶୋଇ ପଡ଼ିଛି । ବହୁ କଷ୍ଟରେ ଅଣ୍ଟାଳି ଅଣ୍ଟାଳି ନିଜ ଘରଯାଏ ଗଲେ । କିନ୍ତୁ ଘର ପାଖେ ପହଞ୍ଚି ଯାହା ଦେଖିଲେ ସେଥିରେ ତାଙ୍କର ଆଉ ଧୈର୍ଯ୍ୟ ରହିଲା ନାହିଁ । ଝଡ଼ରେ ତାଙ୍କ ଚାଳ ଭାଙ୍ଗି ପଡ଼ିଛି । ଆଈଙ୍କର ଦେଖା ନାହିଁ କି କୌଣସି ସ୍ୱର ଶବ୍ଦ ନାହିଁ । ତେଣୁ କୁଆଡ଼ୁ କିଛି ଉପାୟ ନ ପାଇ ବାଧ୍ୟ ହୋଇ

ତାଙ୍କ ଘରଠାରୁ ଅଳ୍ପ ଦୂରରେ ଥିବା ପୋଷ୍ଟ ଅଫିସକୁ ଗଲେ । ସେଠାରେ ପୋଷ୍ଟମାଷ୍ଟରଙ୍କ ପାଖରୁ ଲଣ୍ଠନ ଆଣି ଦେଖନ୍ତି ତ ଗୃହ ଭାଙ୍ଗି ପଡ଼ିଛି । ଆଈ ମରିପଡ଼ିଛି ।

ଏହା ଦେଖି ମଥୁରୀ ଅଜାଙ୍କର ପାଟିରୁ କଥା ବାହାରିଲା ନାହିଁ । ସେ ନୀରବରେ ଜଡ଼ପରି ଠିଆ ହୋଇଥାନ୍ତି । ଠିକ୍ ଏହି ସମୟରେ ଗାଁର ତଳ ପାଖ ସାହିରୁ ସୁଦାମା ପ୍ରଧାନ ତା' ଗୃକର ବନ୍ଧୁକୁ ସାଙ୍ଗରେ ନେଇ ଛତା ଓ ଲଣ୍ଠନ ଧରି ଆସି ପହଞ୍ଚିଲା । କାନ୍ଦକାନ୍ଦ ହୋଇ କହିଲା, ମଥୁରୀ ଅଜା ମୋତେ ବଞ୍ଚାଅ । ମୋର ଷୋହଳ ବର୍ଷର ଝିଅ କାମିନୀ ଉପରେ କାନ୍ଥ ପଡ଼ିଯାଇ ଅଚେତ ହୋଇପଡ଼ିଛି । ତୁମେ ଟିକେ ଆସ । ଯେମିତି ହେଲେ ତାକୁ ଡାକ୍ତରଖାନା ନନେଲେ ସେ ବଞ୍ଚି ପାରିବ ନାହିଁ । ସୁଦାମା କଥା ଶୁଣି ମଥୁରୀ ଅଜା ଭେ' ଭେ' କରି କାନ୍ଦି ଉଠି କହିଲେ, 'ସୁଦାମାରେ ମୋ ଘର ଭାଙ୍ଗି ପଡ଼ିଛି । ସେଥିରେ ତୋ ଆଈ ମରି ପଡ଼ିଛି ।'

ସୁଦାମା ଯାଇ ଦେଖିଲା ସତରେ କମଳା ଆଈଙ୍କର ମୃତ୍ୟୁ ହୋଇଛି । ସେପରି କ୍ଷେତ୍ରରେ ଆଉ କ'ଣ କରିବ ନୀରବରେ ନିରାଶ ହୋଇ ଫେରି ଆସିବାକୁ ଭାବି କହିଲା, ହଉ ଅଜା, ତୁମର ଅବସ୍ଥା ଇମିତି, ତୁମକୁ ଆଉ କ'ଣ କହିବ ? ମୁଁ ଯାଏ ଦେଖେ ଆଉ କାହାର ସାହାଯ୍ୟ ।

ସୁଦାମାର କଥା ଶୁଣି ମଥୁରୀ ଅଜା ନୀରବ ରହିପାରିଲେ ନାହିଁ । ସେ ଭଙ୍ଗା ମନରେ ବି କହି ଉଠିଲେ--ନା, ତୋତେ ମୁଁ ଏକା ଏକା ଫେରାଇ ଦେଇପାରିବି ନାହିଁ । ଘର ତ ଭାଙ୍ଗି-ଯାଇଛି, ତୋ ଆଈଟି ମରି ଯାଇଛି । ହେଲେ ମୋ ଷୋଳ

ବରଷର ନାତୁଣୀର ଜୀବନ ରକ୍ଷାକରିବା ମୋର କର୍ତ୍ତବ୍ୟ । ଚାଲ, ମୁଁ ତୋ ସାଙ୍ଗରେ ଯିବି । ଯେମିତି ହେଲେ କାମିନୀକୁ ବଞ୍ଚେଇବାକୁ ହେବ । ସୁଦାମା ଯେତେ ବାଧା ଦେଲେ ବି ମଥୁରୀ ଅଜା ନ ମାନି କାମିନୀକୁ ଡାକ୍ତରଖାନା ନେଇଗଲେ ।



ମଥୁରୀ ଅଜାଙ୍କର ଏ ପ୍ରକାର ସ୍ୱାର୍ଥତ୍ୟାଗ ପରୋପକାର ପାଇଁ କେବଳ ସୁଦାମା କାହିଁକି ସାରା ଅଞ୍ଚଳର ଲୋକ ମଥୁରୀ ଅଜାଙ୍କୁ ଧନ୍ୟ ଧନ୍ୟ କଲେ । ତା' ପରେ ଯେତେବେଳେ ମନ୍ତ୍ରୀ ଆସିଲେ ଝଡ଼ରେ କ୍ଷତିଗ୍ରସ୍ତ ଲୋକଙ୍କୁ ସାହାଯ୍ୟ ଦିଆଗଲା ଓ ଘର କରିବାପାଇଁ ଟଙ୍କା ଦିଆଗଲା । ସେତେବେଳେ ସେଠାକାର ସରପଞ୍ଚ ବାବୁ ଓ ଅନ୍ୟାନ୍ୟ ମୁଖିଆ ଲୋକମାନେ ମନ୍ତ୍ରୀଙ୍କୁ ମଥୁରୀ ଅଜାଙ୍କର ପରୋପକାର ବିଷୟ ଜଣାଇଲେ ।

ମନ୍ତ୍ରୀ ମଥୁରୀ ଅଜା ଉପରେ ଖୁସି ହୋଇ ତାଙ୍କୁ ସରକାରୀ ସାହାଯ୍ୟ ସହିତ ସ୍ୱତନ୍ତ୍ର ପୁରସ୍କାର ଓ ଭତ୍ତାର ବ୍ୟବସ୍ଥା କଲେ । ମଥୁରୀ ଅଜାଙ୍କର ଫଟୋ ଓ ନାଁ ବଡ଼ବଡ଼ ଅକ୍ଷରରେ ଖବର କାଗଜରେ ପ୍ରକାଶ ପାଇଲା ।





# ସୂର୍ଯ୍ୟମୁଖୀ

ଗୋବର୍ଦ୍ଧନ ବାବୁ ମୁକୁନ୍ଦପୁର ଗାଁ ହାଇସ୍କୁଲର ପ୍ରଧାନ ଶିକ୍ଷକ । ଅତି ସାଧାସିଧା, ଦେବପ୍ରତିମ ଲୋକ । ସେ ଭାରି ଫୁଲପ୍ରିୟ । ଚମ୍ପା, ଗୋଲାପ, ହେନା, ମଲ୍ଲୀ, ଟଗର, ଡାଲିଆ, ଗେଣ୍ଡୁ, କରବୀର, ରଙ୍ଗଣୀ, ସଦାବିହାରୀ, ରଜନୀଗନ୍ଧା, ରକ୍ତମନ୍ଦାର, ମାଳତୀ, ସୁଗନ୍ଧରାଜ, ଶେଫାଳୀ, ମଧୁମାଳତୀ ଓ କୃଷ୍ଣଚୂଡ଼ା ଆଦି ନାନା ଜାତି ଫୁଲ ନିଜ ଘର ଆଗରେ ସୁନ୍ଦର ବଗିଚାଟିଏ କରି ଲଗାଇ ଥାନ୍ତି । ସେହି ବଗିଚାର କେନ୍ଦ୍ରସ୍ଥଳରେ ଗୋଲ କରି ଘାସର ଗୋଟିଏ ବଡ଼ ଲନ୍ ତିଆରି କରାଇ ଥାଆନ୍ତି । ସେହି ଲନ୍‌ର କେନ୍ଦ୍ରସ୍ଥଳରେ ସାତଟି ସୂର୍ଯ୍ୟମୁଖୀ ଫୁଲଗଛ ଲଗାଇ ଥାନ୍ତି । କୌଣସି କାରଣରୁ ସେ ଫୁଲଗଛ ନଷ୍ଟ ହୋଇଗଲେ ପୁଣି ନୂଆ ଗଛ ଆଣି ଲଗାନ୍ତି ।

ଏହିପରି ଫୁଲର ସମାରୋହ ଭିତରେ ଗୋବର୍ଦ୍ଧନ ବାବୁ ସତରେ ଭାରି ଖୁସିରେ ଥାଆନ୍ତି ।

ଗୋବର୍ଦ୍ଧନବାବୁ ସବୁବେଳେ ଶ୍ରେଣୀରେ ପିଲମାନଙ୍କୁ ଉପଦେଶ ଛଳରେ ଏବଂ କେତେବେଳେ କେମିତି ସଙ୍ଗରେ ଭାଷଣ ଛଳରେ ସେହି ଗୋଟିଏ କଥା କହନ୍ତି । ସେ କଥାଟି ହେଲା – ତୁମେମାନେ ସୂର୍ଯ୍ୟମୁଖୀ ଫୁଲ ପରି ହୁଅ, ତେବେ ଯାଇ ଆଦର୍ଶ ହୋଇପାରିବ । ବଡ଼ ମଣିଷ ହୋଇ ଦେଶ ଓ ଜାତିର ମାନ ରକ୍ଷା କରି ବିଶ୍ୱ ଦରବାରରେ ସୁନାମ ଅର୍ଜନ କରିପାରିବ । ଯାହା ଫଳରେ ମୃତ୍ୟୁ ପରେ ବି ଇତିହାସରେ ଅମର ହୋଇ ରହିଯିବ କାଳ କାଳକୁ ।

କମଳ କୁମାର ବୋଲି ସେହି ସ୍କୁଲର ଦଶମ ଶ୍ରେଣୀର ଗୋଟିଏ ଛାତ୍ର । ସେ ଖୁବ୍ ଦୁଷ୍ଟ । ଟିକିଲି ଝଗଡ଼ାରେ ହାତ-ଦେବା ପିଲା ସିଏ । ନବାବ୍ ମୁହଁରେ ଜବାବ୍ ଦିଏ । କାହାକୁ ଡରେନା ।

ଗୋବର୍ଦ୍ଧନ ବାବୁ ତାଙ୍କର ଅଭ୍ୟାସ ବଶତଃ ପୁଣି ଦିନେ କହିଉଠିଲେ – "ପିଲାମାନେ ! ତୁମେମାନେ ଯେ ପର୍ଯ୍ୟନ୍ତ ସୂର୍ଯ୍ୟମୁଖୀ ଫୁଲପରି ଏକମୁଖୀ ଏକନିଷ୍ଠ ନ ହୋଇଛ ସେତେ-ଦିନଯାଏ ପାଠପଢ଼ାରେ ତୁମେ ଠିକ୍ ଭାବେ ସଫଳତା ଲାଭ କରି ପାରିବ ନାହିଁ କି ମଧ୍ୟ ଭଲ ମଣିଷ ହୋଇ ପାରିବ ନାହିଁ ।

ଶିକ୍ଷକଙ୍କର ଏ କଥାକୁ ଠିକ୍ ରୂପେ ବୁଝି ପାରିଲା ନାହିଁ କମଳ କୁମାର । ମନକୁ ମନ ଭାବିଲା ସାର୍ ଏମିତି ସବୁବେଳେ କ'ଣ କହୁଛନ୍ତି ? ସୂର୍ଯ୍ୟମୁଖୀ ଫୁଲ ପରି ଆମେ କେମିତି ହେବୁ ଯେ ? ସେ ଗୋଟାଏ ଫୁଲ, ଆଜି ଅଛି କାଲିକି ମଉଳିଯିବ । ଗଛଟା ତା'ର ଆଜି ଅଛି କାଲିକି ମରିଯିବ । ଫୁଲଟା ହେଉ ବା ତା' ଗଛ ହେଉ ସବୁ ତ ଜଡ଼ । କଥା କହିପାରିବ ନା' କିଛି

ମହତ ଉପଦେଶଟାଏ ଦେଇ ପାରିବ ? ତା' ପରି ଆମେ ହେବୁ କେମିତି ?

ଧନଞ୍ଜୟ କଥା । ପୁଣି ଗୋବର୍ଦ୍ଧନବାବୁ ସେହି ଏକାକଥା କହି ଶ୍ରେଣୀରୁ ବାହାରି ଚାଲି ଯାଉଥିଲେ, କମଳ କୁମାର ଖୁବ୍ ସାହାସର ସହ ତାଙ୍କ ପଛେ ପଛେ ଯାଇ ପଚାରିଲା--"ସାର୍ ! ଆପଣ ଯେ କ'ଣ କହନ୍ତି, ମୁଁ ଆଦୌ ବୁଝି ପାରେନା । ଆମେ ତ ମଣିଷ, ସୂର୍ଯ୍ୟମୁଖୀ ଫୁଲ ପରି ହେବୁ କେମିତି ଯେ ?"



ଗୋବର୍ଦ୍ଧନ ବାବୁ କମଳ କୁମାରର ଏ ପ୍ରକାର କଥା ଶୁଣି ପ୍ରଥମେ ହସିଉଠିଲେ । ତା ପରେ ହସି ହସି ପଚାରିଲେ-"ତୁମେ କେବେ ସୂର୍ଯ୍ୟମଖୀ ଫୁଲ ଦେଖିଛ ?"

"ହଁ ଦେଖିଛି ।" ଉତ୍ତର ଦେଲା କମଳ କୁମାର !

-"ତା'ର ସ୍ୱଭାବ ସଂପର୍କରେ କିଛି ଜାଣିଛ ?" ପୁଣି ପ୍ରଶ୍ନ କଲେ ପ୍ରଧାନ ଶିକ୍ଷକ ଗୋବର୍ଦ୍ଧନ ବାବୁ । ଏଥର ମୁଣ୍ଡ ହଲାଇ

ନାହିଁକଲା କମଲ କୁମାର । ତାପରେ ଗୋବର୍ଦ୍ଧନ ବାବୁ କିଛିଏ ନୀରବ ରହି କହିଲେ-"ଆଚ୍ଛା ଠିକ୍ ଅଛି, ତୁମେ କାଲି ସକାଳେ ଆମ ଘରକୁ ଆସିବ । ମୁଁ ତୁମକୁ ଏ ସଂପର୍କରେ କିଛିକିଛି ବୁଝାଇଦେବ ।"

କମଲ କୁମାର ହଁ ଭରି ଶ୍ରେଣୀକୁ ଫେରିଲା । କମଲ କୁମାରର ମନ ତ ଲାଗିଛି । ରାତିରେ ସେହି କଥା ଭାବି ଭାବି ନିଦ ନାହିଁ । ସକାଳୁ ଉଠି ନିତ୍ୟକର୍ମ ସାରି ଗୋବର୍ଦ୍ଧନ ବାବୁଙ୍କ ଘର ଉଦ୍ଦେଶ୍ୟରେ ବାହାରି ଗଲା ।

ଗୋବର୍ଦ୍ଧନ ବାବୁ କମଲ କୁମାରକୁ ଦେଖି ଖୁବ୍ ଖୁସି ହୋଇଗଲେ ଏବଂ ସଙ୍ଗେ ସଙ୍ଗେ ନିଜ ଫୁଲ ବଗିଚାକୁ କମଳକୁ ଡାକି ନେଇ ସେହି ଘାସ ଲନ୍‌ରେ ନିଜେ ବସିବା ସଙ୍ଗେ ସଙ୍ଗେ କମଲ କୁମାରକୁ ବସିବାକୁ ନିର୍ଦ୍ଦେଶ ଦେଲେ । କମଲ କୁମାର ଏଡ଼େ ସୁନ୍ଦର ଫୁଲ ବଗିଚାଟି ଦେଖି ପ୍ରଥମରୁ ଖୁବ୍ ଖୁସି ହୋଇଗଲା । ତା ପରେ ଗୋବର୍ଦ୍ଧନ ବାବୁ ଆରମ୍ଭ କଲେ- "ଏ ଯେଉଁ ସାତଟି ଗଛ ଲନ୍ ମଝିରେ ଦେଖୁଛ, ସେଥିରେ ଯେଉଁ ବଡ଼ ବଡ଼ ଫୁଲ ଫୁଟିଛି-ତା' ହେଉଛି ସୂର୍ଯ୍ୟମୁଖୀ ଫୁଲ । ସେ ଫୁଲର ଧର୍ମ କ'ଣ ଜାଣ ? ସୂର୍ଯ୍ୟଙ୍କୁ ସେ ମୁହଁ-କରି ଏକନିଷ୍ଠ ଭାବେ ଚାହିଁଥାଏ । ସୂର୍ଯ୍ୟଙ୍କ ଗତି ଯୁଆଡ଼େ ତା' ଗତି ବି ସିଆଡ଼େ । ପ୍ରକୃତିର ଏ ଏକ ବିଚିତ୍ର ସୃଷ୍ଟି । ଏହି ସୂର୍ଯ୍ୟମୁଖୀ ଫୁଲ ସମାଜକୁ ଏକ ମହତ ଶିକ୍ଷା ଦାନ କରୁଛି ।" କମଲ କୁମାର ଖୁବ୍ କୌତୁହଳୀ ହୋଇ ପଚାରିଲା- "କିପରି ?" ଗୋବର୍ଦ୍ଧନ ବାବୁ କହିଲେ - "ଜାଣି ପାରୁନ ?

ନିଷ୍ଠା ହେଉଛି ମଣିଷର ବଡ଼ ସାଧନା । ଏକାଗ୍ରତାରୁ ସିଦ୍ଧି ଲାଭ ହୋଇଥାଏ । ସେ ଯେପରି ନିଷ୍ଠାର ସହ ଏକଲବ୍ୟ ଏକ ମନରେ ସୂର୍ଯ୍ୟଙ୍କ ଆଡ଼କୁ ସଦାସର୍ବଦା ଚାହିଁ ରହୁଛି, ତା ପଛରେ ବା ତା' ଚାରିପାଖରେ ଯେତେ ଯାହା ଘଟିଗଲେ ବି ସେ କେବେ ପଛକୁ କି ଅନ୍ୟ ପାର୍ଶ୍ୱକୁ ଦୃଷ୍ଟି ଫେରେଇ ଚାହିଁବ ନାହିଁ । ତେଣୁ ସେହିପରି ତୁମ୍ଭେମାନେ କୌଣସି ବାହ୍ୟ ଚାକଚକ୍ୟ ପ୍ରତି ଦୃଷ୍ଟି ନ ଦେଇ ଏକଲବ୍ୟ ଏକମନ ହୋଇ ଯଦି ପାଠ ପଢ଼ିବ ତେବେ ବଡ଼ ମଣିଷ ହୋଇପାରିବ । ଅନେକ ପାଠ ପଢ଼ିଲେ ଅନେକ କଥା ଶିଖିବ । ତେଣୁ ସେହି ଆଦର୍ଶରେ ଦେଶ ଜାତିର ନାମରଖି ବିକାଶ ଲାଭ କରିପାରିବ । କ'ଣ ଏଥର ବୁଝିଲ ତ ?"

କମଳ କୁମାର ଖୁବ୍ ଖୁସି ହୋଇ ଏଥର ହଁ ଭରିଲା । କହିଲା. . ."ସାର୍ ଆପଣ ଆଜି ମୋତେ ଗୋଟାଏ ନୂଆ ଦିଗ ଦର୍ଶନ ଦେଲେ । ମୋ ଆଖିରୁ ଅନ୍ଧପୁଟୁଳି ଖୋଲି ଦେଲେ । ମୁଁ ନିଶ୍ଚୟ ଏଥର ଏହି ଆଦର୍ଶରେ ଏକନିଷ୍ଠ ଭାବରେ ପଢ଼ାପଢ଼ି କରିବି । ଆଉ ଜମା ଦୁଷ୍ଟ ହେବିନି । ଯାହା ଯେତେ ଖରାପ କାର୍ଯ୍ୟ ଘଟିଗଲେ ବି ମୁଁ ସେ ଦିଗକୁ କେବେ ଦୃଷ୍ଟିପାତ କରିବି ନାହିଁ ।

ସତକୁ ସତ ଗୋବର୍ଦ୍ଧନ ବାବୁ କିଛି ଦିନ ଲକ୍ଷ୍ୟକଲେ କମଳ କୁମାର ପାଠ ପଢ଼ାରେ ନିଜକୁ ପୂରାପୂରି ନିୟୋଜିତ କରିଦେଲା । ପାଠ ପଢ଼ା ସୁଆଡ଼େ କମଳ କୁମାର ସିଆଡ଼େ । ପ୍ରତିଟି ମହତ ଗୁଣକୁ ଗ୍ରହଣ କରି ଯେତେକ ମନ୍ଦ ବା ଅସତ

ଆଚରଣକୁ ଦେଖିବାକୁ ଆଖି ବୁଜିଦେଲା । ଶୁଣିବାକୁ କାନ ବନ୍ଦ କରିଦେଲା ।



ତାଂ ପରେ ଦେଖାଗଲା କମଳ କୁମାର ହେଲା ଶ୍ରେଣୀରେ ପ୍ରଥମ । ଆଗକୁ ଆଗକୁ ଖୁବ୍ କୃତିତ୍ୱର ସହ ପାଠପଢ଼ି ଗୋଟାଏ ବଡ଼ ବୈଜ୍ଞାନିକ ହେଲା । ନୂତନ ତଥ୍ୟମାନ ଆବିଷ୍କାର କରି ଦେଶ ଓ ସମାଜର ମଙ୍ଗଳ ସାଧନ କରିବାରେ ସକ୍ଷମ ହୋଇପାରିଲା ।





## ଅନ୍ୟାୟ ବିତ୍ତ

ସେ ଏକ ଅଖ୍ୟାତ ଆଦିବାସୀ ପଲ୍ଲୀ ଅଞ୍ଚଳ । ସେହି ଅଞ୍ଚଳରେ ରଘୁନାଥପୁର ବୋଲି ଗୋଟିଏ ଛୋଟିଆ ଗାଁ । ସେ ଗାଁର ଅଧିବାସୀ ଅଧିକାଂଶ ଆଦିବାସୀ ଓ ହରିଜନ । ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ସମସ୍ତେ ପ୍ରାୟ ଗରିବ । ବର୍ଷର ସବୁଦିନେ ଦୁଇଓଳି ଦୁଇମୁଠା ଖାଇବାକୁ ପାଆନ୍ତି ନାହିଁ ।

ସେହି ଗାଁରେ ବନମାଳି ସାହୁ ବୋଲି ଜଣେ ମହାଜନ । ସମସ୍ତେ ତାଙ୍କୁ ସାହୁକାର ସାଆନ୍ତ ବୋଲି କହନ୍ତି । ଗାଁରେ ତା'ର ବେଶ୍ ଜମିଜମା ଥାଏ । ତାଛଡ଼ା ଘରେ ଗୋଟାଏ ବଡ଼ ଦୋକାନ । ଗାଁ ଲୋକଙ୍କୁ ମଧ୍ୟ ଚଢ଼ା ସୁଧରେ ଟଙ୍କା କରଜ ଦିଏ । ବର୍ଷକୁ ବର୍ଷ ଧାନ ଓ ଟଙ୍କା ସୁଧ ସହ ଆଦାୟ କରି ପୁଣି କରଜ ଦିଏ । ତେଣୁ ଦିନକୁ ଦିନ ଧନ ବଢ଼ିବାରେ ଲାଗିଥାଏ ।

ତେଣୁ ସେ ଅଞ୍ଚଳର ଲୋକ ବନମାଳି ସାହୁଙ୍କୁ ଖୁବ୍ ମାନନ୍ତି । ବନମାଳି ସାହୁ ବି ଧନ ଗର୍ବରେ ଧରାକୁ ଶରା ମଣେ

କରେ । ଯାହାକୁ ଯାହା ଯେତେବେଳେ କହେ- ସେ ତାହା କରିବାକୁ ବାଧ୍ୟ ।

ଦିନକର କଥା । ସାହୁକାର ବନମାଳି ସାହୁ ସେ ଅଞ୍ଚଳର ପାଞ୍ଚଖଣ୍ଡି ଗାଁରେ ସମସ୍ତ ଋଣକାରମାନଙ୍କୁ ଡାକି କହିଲା - ସମସ୍ତଙ୍କୁ ଜଙ୍ଗଲରୁ ଦୁଇଭାର ଲେଖାଏଁ ଶୁଖିଲା କାଠ ଆଣି ତା' ଘରେ ଭେଟି ଦେବାକୁ ହେବ । ଯେ ନ ଦେବ ସେ ତା'ରି ପରିଣତି ଭୋଗ କରିବ ।

ସାହୁକାର ଆଦେଶ କିଏ ବା ଲଙ୍ଘନ କରିବ ?

ତେଣୁ କାଳ ବିଳମ୍ବ ନ କରି ସଭିଏଁ ଦୁଇଭାର କରି କାଠ ଜଙ୍ଗଲରୁ ଆଣି ସାହୁକାର ବାଡ଼ିରେ ଠୁଳ କଲେ ।

ରଧୁଆ ସେହି ପାଖ ଗାଁର ଜଣେ ବଳିଷ୍ଠ ହରିଜନ ଯୁବକ । ସେ ସେଦିନ ଘରେ ନଥିଲା ! ମାମୁଁ ଘରକୁ ଯାଇଥିଲା । ତେଣୁ ଠିକ୍ ସମୟରେ କାଠଭାର ନେଇ ସାହୁକାର ବାଡ଼ିରେ ପହଞ୍ଚାଇ ପା'ରିଲା ନାହିଁ ।

କିନ୍ତୁ ଏଣେ ସାହୁକାର କିଏ କାଠ ଆଣିଲା କିଏ ନ ଆଣିଲା ସବୁ ଲେଖି ରଖୁଥାଏ । ଶେଷକୁ ଦେଖାଗଲା କେବଳ ରଧୁଆ ଛଡ଼ା ଅନ୍ୟ ସମସ୍ତ ଋଣକାରମାନେ କାଠ ଆଣି ଠିକ୍ ସମୟରେ ପହଞ୍ଚାଇଛନ୍ତି ।

ସାହୁକାର ବନମାଳି ସାହୁର ରାଗ ସଟଙ୍ଗେ ସଙ୍ଗେ ପଞ୍ଚମକୁ ଉଠିଗଲା । ସମସ୍ତଙ୍କ ସମ୍ମୁଖରେ ଗର୍ଜନ ଛାଡ଼ି କହିଲା- ଆଚ୍ଛା, ସେ ରଧୁଆର ଏଡ଼େ ସାହସ, ମୋ ଆଦେଶ ଅମାନ୍ୟ କଲା । ଆଚ୍ଛା ଦେଖିବା, ତୁ ଅ କୁଆଡ଼େ ଯିବ ।

ରଘୁଆ ମାମୁଁ ଘରୁ ଫେରି ସାହୁକାର ତା' ଉପରେ ରାଗିଥିବା କଥା ଗ୍ରାମବାସୀଙ୍କ ମୁହଁରୁ ସବୁ ଶୁଣିଲା । ତଥାପି ଭୟ ନକରି କାଠ ଭାର ଧରି ଯାଇ ସାହୁକାର ପାଖରେ ପହଞ୍ଚିଲା । ରଘୁଆକୁ ଦେଖି ସାହୁକାର ଗର୍ଜନ କରି କହି ଉଠିଲେ-କିରେ, ତୋର ତ ଭାରି ଦେମାକ ବଢ଼ିଗଲାଣି ଦେଖୁଛି । ଯା, ନେଇଯା ସେ କାଠ । ମୋର ସେ କାଠ ଲୋଡ଼ା ନାହିଁ । ତୁ ମୋ ଆଦେଶ ଅମାନ୍ୟ କରିଛୁ । ତେଣୁ ମୁଁ ତୋତେ ଉଚିତ୍ ଶାସ୍ତି ଦେବି । ଦେଖିବି ତୋତେ ଏଥର କିଏ ରକ୍ଷା କରିବ ?



ସାହୁକାରର ଏ ପ୍ରକାର ଗାଳିରେ ରଘୁଆର ମୁହଁ କଳା ପଡ଼ିଗଲା । ସେ ଭୟରେ ଥରିଥରି କହିଲା - ସାଆନ୍ତେ, ମୋ ମାମୁଁଙ୍କ ଦେହ ଭଲ ନଥିଲା, ଦେଖିବାକୁ ଯାଇଥିଲି । ତେଣୁ ସେଦିନ ଆସିପାରି ନଥିଲି । ସେଇଥିପାଇଁ ପରା ଆଜି କାଠ ନେଇ ଆସିଛି । ଆଦେଶ ଅମାନ୍ୟ କଲି କିପରି ?

ରଘୁଆର ଏ ଉତ୍ତରରେ ପୁଣି ସାହୁକାର ନିଆଁ ବାଣ ପରି ଗର୍ଜି ଉଠି କହିଲେ – ଏଁ, ତୋର ତ ମୁହଁ ବେଶ୍ ବଢ଼ି ଗଲାଣି ଦେଖୁଛି ? ତୁ ମୋତେ କ'ଣ ଭାବିଛୁ ? କାଠ ନା ପଥର ? ଏହା କହି ସଙ୍ଗେ ସଙ୍ଗେ ଉଠିଯାଇ ଗୋଟାଏ ପାଞ୍ଚଣ ଆଣି ରଘୁଆକୁ ବାଡ଼େଇ ପକାଇଲେ ସାହୁକାର । ରଘୁଆର ଦେହ ସାରା ଫୋଟ୍କା ବସିଗଲା । କାନ୍ଦି କାନ୍ଦି ଧାଇଁ ପଳାଇଗଲା ରଘୁଆ ।

ଠିକ୍ ସେହିଦିନ ରାତି । ରାତିରେ ଭୀଷଣ ଶୀତ । ଖାଇ-ସାରି ସାହୁକାର ଶୋଇବାକୁ ଗଲେ । ସେ ତ ଭୀଷଣ ଅବିଶ୍ୱାସୀ । କାହାକୁ ବିଶ୍ୱାସ କରନ୍ତି ନାହିଁ । ପ୍ରତିଦିନ ରାତିରେ ଶୋଇବା ସମୟରେ ନିଜ ତକିଆ ତଳେ ସମସ୍ତ ଟଙ୍କା ଆଣି ରଖି ଶୁଅନ୍ତି ।

ସାହୁକାରଙ୍କର ମଧ୍ୟ ବଡ଼ିଖିଆ ଅଭ୍ୟାସ ଅଛି । ଶୋଇବା ପୂର୍ବରୁ ବଡ଼ି ଟୋକେ ନ ପିଇଲେ ତାଙ୍କୁ ଭଲ ଲାଗେ ନାହିଁ । ସେଦିନ ମଧ୍ୟ ବଡ଼ି ଖାଇ ଶୋଇଲେ । କିନ୍ତୁ ଖଣ୍ଡିଆ ବଡ଼ିଟାରେ ଟିକିଏ କେମିତି ନିଆଁ ରହିଯାଇଥିଲା । ତାହା କ୍ରମେ କ୍ରମେ କୁହୁଳି କୁହୁଳି ରେଜେଇ ତକିଆ ଧରିବାକୁ ଲାଗିଲା । ସାହୁକାରଙ୍କୁ ତ ଘୋର ନିଦ ଲାଗି ଯାଇଛି । ତାଙ୍କ ସ୍ତ୍ରୀ ପିଲାମାନେ ଅନ୍ୟ ଘରେ ଶୋଇଛନ୍ତି । କ୍ରମେ କ୍ରମେ ନିଆଁ ସମଗ୍ର ବିଛଣା ଧରିଗଲା ଓ ଯେତେବେଳେ ସାହୁକାରଙ୍କ ପିଠିରେ ନିଆଁ ଧାପ ଲାଗିଲା, ସାହୁକାର ଯନ୍ତ୍ରଣାରେ ଉଠିପଡ଼ି ପାଟିକରି ଉଠିଲେ । ସମସ୍ତେ ଧାଇଁ ଆସିଲେ । ସାହୁକାର ଖାଲି ଜ୍ୱାଳା ଯନ୍ତ୍ରଣାରେ ମା'ଲୋ ବୋପାଲୋ କହି ଗଡ଼ୁଥାନ୍ତି । ଏହି ସମୟରେ ତାଙ୍କର

ତକିଆ ତଳେ ରଖିଥିବା ଟଙ୍କା କଥା ମନେ ପଡ଼ିଲା । ସେତେ-ବେଳକୁ ସବୁ ଟଙ୍କା ପୋଡ଼ି ପାଉଁଶ ହୋଇଗଲାଣି ।

ଟଙ୍କା ପୋଡ଼ିଯିବା ଜାଣି ସାହୁକାର ଚିତ୍କାର କରି କାନ୍ଦି ଉଠିଲା । ଦେହରେ ଏତେ ପୋଡ଼ାଜଳା ଯନ୍ତ୍ରଣା ତା ଆଗକୁ ସବୁଯାକ ଟଙ୍କା ନଷ୍ଟ ।



ସଙ୍ଗେ ସଙ୍ଗେ ଅଜ୍ଞାନ ହୋଇ ପଡ଼ିଲେ ସାହୁକାର ।

କାହାକୁ କହିବେ । ଅଧର୍ମରେ ପର ତଣ୍ଟି ଚିପି ଅନ୍ୟକୁ ଶାସ୍ତି ଦେଇ ଯେପରି ଧନ ଅର୍ଜନ କରିଥିଲେ ସେଇମିତି ନଷ୍ଟ ହେବନି ତ ଆଉ କ'ଣ ? ଅନ୍ୟକୁ ଯେ ବିନା ଦୋଷରେ ଦଣ୍ଡ ଦିଏ ସେ ଏଇମିତି ଭଗବାନଙ୍କ ଠାରୁ ଦଣ୍ଡ ପାଏ ।






ରଜନୀକାନ୍ତ ବାବୁ ଜଣେ ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ । ଆଦର୍ଶ ଶିକ୍ଷକ ଭାବରେ ବହୁ ସରକାରୀ ହାଇସ୍କୁଲରେ ଶିକ୍ଷକତା କରି ସୁଖ୍ୟାତି ଅର୍ଜନ କରିଛନ୍ତି । ରାଷ୍ଟ୍ରପତି ପଦକ ପୁରସ୍କାର ପାଇଛନ୍ତି ମଧ୍ୟ ।

ରଜନୀକାନ୍ତ ବାବୁଙ୍କର ଦୁଇ ପୁଅ ଓ ଗୋଟିଏ ଝିଅ । ଚାକିରିରେ ଥିବା ସମୟରେ ସେମାନଙ୍କର ଶିକ୍ଷା, ବିବାହ ଆଦି କାର୍ଯ୍ୟ ସମାପ୍ତ କରି ସାରିଛନ୍ତି । ଏବେ ରଜନୀକାନ୍ତ ବାବୁଙ୍କର ବଡ଼ ପୁଅର ପୁଅ, ନାତି ଦେବବ୍ରତ ଆସି ଦଶମ ଶ୍ରେଣୀରେ ପାଠ ପଢ଼ିଲାଣି ।

ଅବସର ଗ୍ରହଣ କରିବା ପରେ ଏବେ ରଜନୀକାନ୍ତ ବାବୁ ସେହି ନାତି, ନାତୁଣୀଙ୍କ ମେଳରେ ବେଶ୍ ଖୁସିରେ ସମୟ ବିତାଇ ଦେଉଛନ୍ତି । କେବେ କେମିତି ସଂଧ୍ୟାରେ ବାଡ଼ି ଖଣ୍ଡିଏ

ହାତରେ ଧରି ସାନ୍ଧ୍ୟ ଭ୍ରମଣରେ ନଦୀବନ୍ଧ ଆଡ଼େ ଯାଇ ଫେରନ୍ତି । ଏହାଛଡ଼ା ଦୈନିକ ଖବର କାଗଜଟି ଟିକିନଖି ପଢ଼ିବା ଏବଂ ରେଡ଼ିଓରୁ ସମସ୍ତ ସମ୍ବାଦଗୁଡ଼ିକ ରୀତିମତ ଶୁଣିବା ହେଲା ତାଙ୍କର ନିତି ଦିନର କାମ ।

ନାତି ଦେବବ୍ରତ ସବୁବେଳେ ରଜନୀ ବାବୁଙ୍କ ପିଛୁ ଧରି-ଥାଏ । ରଜନୀ ବାବୁ ତା' ସାଙ୍ଗରେ ଥଟ୍ଟା ମଜ୍ଜା ଯେପରି ହୁଅନ୍ତି, ଠିକ୍ ସେହିପରି ମଧ୍ୟ ତାକୁ ସକାଳେ ସଞ୍ଜେ ବସି ପାଠ କହି ଦିଅନ୍ତି । ଗୋଟିଏ କଥାରେ କହିବାକୁ ଗଲେ ରଜନୀକାନ୍ତ ବାବୁ ଦେବବ୍ରତକୁ ଯେପରି ଅଧିକ ଭଲ ପାଆନ୍ତି ଦେବବ୍ରତ ମଧ୍ୟ ତାଙ୍କୁ ସେହିପରି ଆଦର ଥାଏ ।

ସବୁବେଳେ ରଜନୀକାନ୍ତ ବାବୁ ବିଭିନ୍ନ ସାଧାରଣ ଜ୍ଞାନ ଓ ବୁଦ୍ଧିମାନ ପ୍ରଶ୍ନ ପଚାରି ଦେବବ୍ରତକୁ ଠକେଇ ଦିଅନ୍ତି । ସବୁ-ବେଳେ ଦେବବ୍ରତ ହାର୍ ମାନେ ଏବଂ ରଜନୀ ବାବୁ ବିଜୟ ଲାଭ କରନ୍ତି । କିନ୍ତୁ ରଜନୀକାନ୍ତ ବାବୁଙ୍କୁ କେମିତି ଦିନେ ଠକେଇବ ଦେବବ୍ରତ ସବୁବେଳେ ଖାଲି ସେହି କଥା ଭାବୁଥାଏ ।

ଦିନକର କଥା । ସଞ୍ଜବେଳେ ଦେବବ୍ରତ ରଜନୀକାନ୍ତ ବାବୁଙ୍କ ସାଥିରେ ନଦୀ ବନ୍ଧ କଡ଼େ କଡ଼େ ବୁଲିବା ବେଳେ କହିଲା–"ଜେଜେ ! ଆପଣ ମୋତେ ସବୁଦିନେ ଠକେଇ ଦେଉଛନ୍ତି । ମନେରଖନ୍ତୁ, ମୁଁ ବି ଦିନେ ଆପଣଙ୍କୁ ଏହା ଭିତରେ ଠକେଇବି । ମୁଁ ଯେତେବେଳେ ଠକେଇବି, ଆପଣ ଆଦୌ ଜାଣି ପାରିବେ ନାହିଁ ।"

ଦେବବ୍ରତର କଥା ଶୁଣି ହସି ହସି ରଜନୀକାନ୍ତ ବାବୁ କହିଲେ – ବୁଝିଲୁ ଦେବ, ତୁ ମୋତେ କେବେ ବି ଠକେଇ ପାରିବୁ ନାହିଁ । ଯଦି କେବେ ଠକେଇ ଦେଇପାରୁ, ତୁ ଯେତେ ରସଗୋଲା ଖାଇବୁ ମୁଁ ଖୋଇବ ।"

ଏହା ମଧ୍ୟରେ କିଛି ଦିନ ବିତିଗଲା । ରଜନୀକାନ୍ତ ବାବୁ ଦେବବ୍ରତ କହିଥିବା କଥା ପୂରାପୂରି ଭୁଲିଗଲେଣି । କିନ୍ତୁ ଦେବବ୍ରତ ସେକଥା ଠିକ୍ ମନେ ରଖିଛି ।

ରଜନୀକାନ୍ତ ବାବୁଙ୍କୁ କେମିତି ଠକେଇବ ଶିଶ୍ରାକାର ଗୋଟିଏ ଉପାୟ ସ୍ଥିର କଲା ଦେବବ୍ରତ । ରଜନୀକାନ୍ତ ବାବୁ ବୁଢ଼ା ହୋଇଗଲେଣି । ଭଲଭାବେ ଦେଖାଯାଏ ନାହିଁ । ପ୍ରତିଦିନ ସଂଧ୍ୟାରେ ସେ ଦେବବ୍ରତକୁ ରେଡ଼ିଓ ଖୋଲିବାକୁ କହନ୍ତି ।

ଦିନକର କଥା । ସେ ସାନ୍ଧ୍ୟ ଭ୍ରମଣରୁ ଫେରିଆସି ଖଣ୍ଡିଏ ଆରାମ ଚୌକିରେ ବସିଥାନ୍ତି । ଦେବବ୍ରତ ସବୁଦିନ ପରି ରେଡ଼ିଓଟି ଆଣି ତାଙ୍କଠାରୁ କିଛି ଦୂରରେ ରଖିଦେଲା । ରେଡ଼ିଓଟିର ସୁଇଚ୍ ନ ଖୋଲି ମିଛରେ କହିଲା – "ଜେଜେ ! ମୁଁ ରେଡ଼ିଓ ଖୋଲି ଦେଇଛି । ଏବେ ଟିକିଏ ମୋ ସାଙ୍ଗ ପାଖରୁ ଦଶ ମିନିଟ୍ ମଧ୍ୟରେ ଆସୁଛି । ଆପଣ ବସି ରେଡ଼ିଓ ଶୁଣୁ-ଥାନ୍ତୁ ।" ସଂଧ୍ୟା ହେଲେ ରଜନୀକାନ୍ତ ବାବୁଙ୍କୁ ବିଶେଷ ଭଲ ଦେଖାଯାଏ ନାହିଁ । ଦେବବ୍ରତର କଥାରେ ହୁଁ ମାରିଲେ । ଦେବବ୍ରତ ସଙ୍ଗେ ସଙ୍ଗେ ସେହି ପାଖ କବାଟ କଣରେ ଲୁଚି ରହିଲା ।

ରେଡ଼ିଓ ବାଜବାରେ ସାମାନ୍ୟ ବିଳମ୍ବ ଦେଖି କହିଉଠିଲେ - "ଆରେ ଏ ଦୁଷ୍ଟଟା ରେଡ଼ିଓ ଖୋଲିଲା ନାହିଁ ନା କ'ଣ ?

ଦେବବ୍ରତ ତ ପ୍ରକୃତରେ ରେଡ଼ିଓ ଲଗାଇ ନାହିଁ, ତେଣୁ ବାଜିବ ବା କିପରି ? କିନ୍ତୁ ରଜନୀକାନ୍ତ ବାବୁଙ୍କ କଥା ଶୁଣି ସେହି କବାଟ କୋଣରୁ କେମିତି ଏକ କୃତ୍ରିମ ସ୍ୱରରେ ଆରମ୍ଭ କଲା- ଆକାଶ ବାଣୀ କଟକ । ଆଞ୍ଚଳିକ ସଂବାଦ ପଢୁଛନ୍ତି- ଗୋବିନ୍ଦ ଚୌଧୁରୀ ।



ଏତକ ଶୁଣିବା ମାତ୍ରେ ରଜନୀକାନ୍ତ ବାବୁ କହିଉଠିଲେ- ଏଁ ଗୋବିନ୍ଦ ଚୌଧୁରୀ । ଏ କିଏରେ ବାବା ନୂଆ ନାଆଁ, ନୂଆ ସ୍ୱର । ନୂଆକରି ନିଯୁକ୍ତି ପାଇଥିବ ଅବା । ଗୋଟାଏ ପିଲାକଣ୍ଠ ପରି ଶୁଭୁଛି । କିଏ ନୂଆ ପିଲା ପାଠପଢ଼ା ସାରି ଚାକିରି ପାଇ ଆସିଛି ବୋଧେ ।

ଦେବବ୍ରତ କିନ୍ତୁ ସଂବାଦ ଜହ୍ନିଗୁଣିଛନ୍ତି । ପୂର୍ବଦିନ ସକାଳର ଅଞ୍ଚଳକ ସମ୍ବାଦ ଲେଖି ରଖିଥିଲା । ସେଥିରେ ଆଉ କିଛି ନୂଆ ମିଶେଇ ଧୀରେ ଧୀରେ କବାଟ କଣରୁ ଲୁଚି ଲୁଚି ପଢ଼ୁଥିଲା– ଆଜିକାର ମୁଖ୍ୟ ସମ୍ବାଦ ହେଲା ମୟୂରଭଞ୍ଜ ଜିଲ୍ଲାର ଶାନ୍ତିପୁର ଗ୍ରାମର ଦେବବ୍ରତ ନାମକ ଜଣେ ଛାତ୍ର ରାଜ୍ୟ ବକ୍ତୃତା ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ମୁଖ୍ୟମନ୍ତ୍ରୀଙ୍କଠାରୁ ପାଞ୍ଚଶତ ଟଙ୍କା ପୁରସ୍କାର ପାଇଛନ୍ତି । ରାଜ୍ୟ ଶିଳ୍ପ ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ତିନକୋଟି ୫ ଲକ୍ଷ ଟଙ୍କା ବ୍ୟୟ ମଞ୍ଜୁର କରିଛନ୍ତି । ଇତିମଧ୍ୟରେ ଆଦର୍ଶ ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ରଜନୀକାନ୍ତ ମହାନ୍ତି ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଆଜି ସକାଳ ୮ ଟା ସମୟରେ ନିଜ ବାସଭବନରେ ନିଜର ପରିବାରବର୍ଗଙ୍କୁ ଶୋକ ସାଗରରେ ଭସାଇ ଦେଇ ଇହଲୀଳା ସମ୍ବରଣ କରିଛନ୍ତି ।

ସେଥିପାଇଁ ମୁଖ୍ୟମନ୍ତ୍ରୀ ଓ ରାଜ୍ୟ ଶିକ୍ଷାମନ୍ତ୍ରୀ ଗଭୀର ଶୋକ ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କ ଶୋକସଂତପ୍ତ ପରିବାର ବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରି ଏକ ତାରବାର୍ତ୍ତା ପଠାଇଛନ୍ତି ।

ରଜନୀକାନ୍ତ ବାବୁ ଏ ସମ୍ବାଦ ଶୁଣି ଆଶ୍ଚର୍ଯ୍ୟରେ ଅଭିଭୂତ ହୋଇପଡ଼ିଲେ । ସେ କ'ଣ ଶୁଣିଲେ? ସେ ରେଡିଓ ଶୁଣୁଛନ୍ତି କି ଆଉ କ'ଣ ଶୁଣୁଛନ୍ତି ନିଜକୁ ନିଜେ ବିଶ୍ୱାସ କରିପାରୁ ନଥିଲେ । ମନକୁମନ କ'ଣ ଭାବିଲେ କେଜାଣି ଦେବ ଦେବ ବୋଲି ଚିତ୍କାର କରିଉଠିଲେ ।

ତାଙ୍କର ଏଭଳି ଡାକଶୁଣି ଭିତର ଘରୁ ବାହାରକୁ ବାହାରି ଆସିଲେ ଦେବବ୍ରତର ମା–ସରସୀ ଦେବୀ ।

ସେତେବେଳକୁ ଦେବବ୍ରତ ଆସି ରଜନୀ ବାବୁଙ୍କ ପାଖରେ ବସିସାରିଥିଲା । ରେଡ଼ିଓଟି ପ୍ରକୃତରେ ଲଗାଯାଇ ନ ଥିବାରୁ ତାହା ନୀରବ ରହିଲା । ସରସୀ ଦେବୀ କହିଉଠିଲେ-- "କେତେ କେତେ ଥର ଏତେ ଡାକୁଛନ୍ତି ତୁ ଶୁଣିପାରୁନୁ ।"



ମା'ଙ୍କ କଥାରେ ହସି ହସି ଦେବବ୍ରତ କହିଲା--"ଶୁଣିଲି ବୋଲି ତ ପାଖକୁ ଧାଇଁ ଆସିଲି ।"

ତାପରେ ମା' କହିଲେ--"ରେଡ଼ିଓଟାକୁ ଏଠି ଖାଲିଟାରେ ଥୋଇଛୁ କାହିଁକି ଲଗାଉନୁ ।"

ଦେବବ୍ରତ ଈଷତ୍ ହସି କହିଲା, "ଲଗାଇଥିଲି ଯେ-ଏବେ ବୋଧହୁଏ ଲାଇନ୍ କଟିଯାଇଥିବ । ଆଚ୍ଛା ହେଉ ଦେଖିବା ଏବେ ଲାଗୁଛି କି ନାହିଁ ।"

ଏହା କହି ଏଥର ପ୍ରକୃତରେ ରେଡ଼ିଓଟି ଲଗାଇଦେଲା ଦେବବ୍ରତ । ଏଥର କିନ୍ତୁ ରେଡ଼ିଓରେ ପ୍ରକୃତ ଆଞ୍ଚଳିକ ସମ୍ବାଦ ଭାସି ଆସିଲା । ଆକାଶବାଣୀ କଟକ । ଅଞ୍ଚଳିକ ସମ୍ବାଦ ପଢ଼ୁଛନ୍ତି ଅତୀନ୍ ରାୟ । ବିସ୍ମୟରେ ଦେବବ୍ରତ ଆଡ଼କୁ ଚାହିଁଲେ ରଜନୀକାନ୍ତବାବୁ-କହରେ ଦେବ ଏ ସବୁ କଥା କ'ଣ ମୁଁ ତ କିଛି ବୁଝିପାରୁନ । ଏଇନେ ପରା କିଏ ଗୋବିନ୍ଦ ଚୌଧୁରୀ ବୋଲି ବ୍ୟକ୍ତି ଆସି ସମ୍ବାଦ ପଢ଼ୁଥିଲା ଯେ- ଅବସର ପ୍ରାପ୍ତ ଆଦର୍ଶ ପ୍ରଧାନ ଶିକ୍ଷକ ରଜନୀକାନ୍ତ ମହାନ୍ତିଙ୍କର ପରଲୋକ ହୋଇ-ଯାଇଛି । ସେ ଲୋକ ମୁଁ ନୁହେଁ ତ ?

ତାପରେ ପୁଣି ବର୍ତ୍ତମାନ ଏ କି ଆଞ୍ଚଳିକ ସମ୍ବାଦ ? ଆରେ ଏ ସବୁ କଥା କ'ଣ ? ମୁଁ ଠିକ୍ ଶୁଣିଛି ନା ମୋ କାନ ଖରାପ ହୋଇଗଲାଣି ।"

ଏଥର ଦେବବ୍ରତ ହସି ହସି ଆରମ୍ଭ କଲା-"ତୁମେ କ'ଣ ଆଦର୍ଶ ପ୍ରଧାନ ଶିକ୍ଷକ ।"

"ନା, ତାହେଲେ ସେ ଆଉ କାହା କଥା ବୋଧହୁଏ ।"

ମୁଣ୍ଡହଲାଇ କହି ଉଠିଲେ ରଜନୀକାନ୍ତ ବାବୁ ।

ଦେବବ୍ରତ ଏଥର ଆଉ ହସ ସମ୍ଭାଳି ନପାରି ବହେ ହସି-ପକାଇଲା ଏବଂ କହିଲା -"ବୁଝିଲ କେକେ ଏଥର ଚାଲ ।"

-"କରେ କଆଡେ ?" ପ୍ରଶ୍ନ କଲେ ରଜନୀ ବାବୁ ।

ମନଇଚ୍ଛା ରସଗୋଲା ମୋତେ ଖାଇବାକୁ ଦେବପରା ।"

–"କାହିଁକି ?"

"ମୁଁ ତୁମକୁ ଠକେଇ ଦେଲେ ଯେତେ ଇଚ୍ଛା ରସଗୋଲା ଖାଇବାକୁ ଦେବ ବୋଲି ତୁମେ କହିଥିଲ ?" ତେବେ ତୁ କ'ଣ ବାଜିରେ ଜିତିଛୁ କି ? ନୁହେଁ ଆଉ କଣ ? ଏଇ ଟିକିଏ ପୂର୍ବରୁ ଯେଉଁ ଗୋବିନ୍ଦ ଚୌଧୁରୀ ସମ୍ବାଦ ପଢ଼ୁଥିଲେ-ସେ କିଏ ଜାଣ, ସେ ପରା ମୁଁ ନିଜେ ଦେବବ୍ରତ।" ଏଥର କେଜେ ବି ହସି-ପକେଇଲେ।"







# ଅନୁତାପ

ନଣ୍ଡିଚପୁର ବୋଲି ଗୋଟିଏ ଗାଁ । ସେହି ଗାଁରେ ମାଧବ ସ୍ବାଇଁ ବୋଲି ଜଣେ ଲୋକ ଥିଲା । ସେ ଗୋଟିଏ ଅଫିସରେ ପିଅନ ଚାକିରି କରେ । ତାର କେବଳ ଗୋଟିଏ ମାତ୍ର ପୁଅ । ନାଁ ତାର ଶିଶିର । ମାଧବ ଯେଉଁ ଟଙ୍କା ପାଏ ସେଥିରେ ସେ ତା ସ୍ତ୍ରୀ, ପୁଅ ଓ ସେ ସୁଖେ ଦୁଃଖେ ଚଳିଯାନ୍ତି । ଶିଶିରକୁ ଯେତେବେଳେ ଛ ବର୍ଷ ହେଲା ମାଧବ ନେଇ ତାର ଗାଁ ସ୍କୁଲରେ ନାଁ ଲେଖାଇ ଦେଲା । ପିଲାଟି କେମିତି ଭଲ ପଢ଼ିବ ସେଥିପାଇଁ ମୂଳରୁ ତା'ର ଯତ୍ନ ନେଲା । ତା'ର ସେହି ଅଳ୍ପ ସମ୍ବଳ ଭିତରେ ଶିଶିର ପାଇଁ ଭଲ ଜାମା, ପେଣ୍ଟ ଓ ଆବଶ୍ୟକୀୟ ଖାତା ଓ ବହି ଆଦି କିଣିଦିଏ ।

ଶିଶିର ଗୋଟିଏ ଭଲ ପିଲା । ସେ ଦୁଷ୍ଟ ପିଲାଙ୍କ ସହ ଆଦୌ ମିଶେ ନାହିଁ । ମନ ଦେଇ ପାଠ ପଢ଼େ ।

ଦିନ ଗଡ଼ି ଚାଲିଲା । ଶିଶିର ଶ୍ରେଣୀକୁ ଶ୍ରେଣୀ କୃତିତ୍ୱର ସହ ପାସ୍ କରି କଲେଜରେ ନାମ ଲେଖାଇଲା ।

ମାଧବ ତାକୁ ନେଇ କଲେଜର ଛାତ୍ରାବାସରେ ଛାଡ଼ି ଆସିଲା । ମାସକୁ ମାସ ତା'ର ଯେତକ ଟଙ୍କା ଦରକାର ପଠାଇ ଦେଉଥିଲା । ନିଜର ଯେତେ ଅସୁବିଧା ହେଲେବି ଶିଶିର ପାଖକୁ ଟଙ୍କା ପଠାଇବାକୁ ହେଳା କରୁ ନଥିଲା ମାଧବ ।

ଶିଶିର ଏମ୍. ଏ. ପାସକରି ଗୋଟିଏ ସରକାରୀ ଚାକିରୀ କଲା ! ପ୍ରଥମ ମାସ ଦରମା ପାଇ ମାଧବ ପାଖକୁ ପଠାଇଲା ।



ଟଙ୍କା ପାଇଲା ପରେ ମାଧବର ଆନନ୍ଦ କହିଲେ ନ ସରେ । ଶିଶିର ପାଖକୁ ଚିଠି ଦେଲା ମାଧବ ।

ଚିଠିର ଲେଖାଥିଲା-

ସ୍ନେହର ବାବୁ ଶିଶିର,

ମୋର ସୁକଲ୍ୟାଣ ନେବୁ । ତୋ'ର ଚାକିରି ପାଇବା ଖବର ପାଇ ଯେତିକି ଆନନ୍ଦିତ ହୋଇଥିଲି, ତୋ ଦରମା ଓ ଚିଠି ପାଇ ଆହୁରି ଖୁସି ହେଲି । କିନ୍ତୁ ତୁ ଦରମା ଟଙ୍କା ଖର୍ଚ୍ଚ ନ କରି ମୋ ପାଖକୁ କାହିଁକି ପଠାଇଲୁ ? ସହର ଜାଗା । ଚଳିବାରେ ଅସୁବିଧା ହେବ । ତୋର ଜାମା ପେଣ୍ଟ ତିଆରି କରିବା ଦର-କାର । ସହରର ଅନ୍ୟ ପାଞ୍ଚ ଲୋକଙ୍କ ପରି ତତେ ପୁଣି ଚଳି-ବାକୁ ହେବ । ତୋ ସାଙ୍ଗମାନଙ୍କ ସାଙ୍ଗରେ ସମାନ ହୋଇ ଚଳିଲେ ମୁଁ ବେଶି ଖୁସି ହେବି । ମୁଁ ଚିଅନ ଚାକିରି କରି ତତେ ପାଠ ପଢାଇ ମଣିଷ କରିଛି । ସେହି ମୋର ଜୀବନର ସବୁଠୁ ବଡ ସଫଳତା । ଆଉ ବିଶେଷ କିଛି ଲେଖୁନି । ଆଗରେ ରଜ ଆସୁଛି । ରଜକୁ ନିଶ୍ଚୟ ଆସିବୁ । ଆଶାକରେ ଭଗବାନଙ୍କ ଦୟାରୁ ଭଲରେ ଥିବୁ । ଚିଠି ପାଇ ଚିଠି ଦେବୁ । ॥ ଇତି ॥

ତୋର ବାପା

ଚିଠିଟି ବନ୍ଦ କରି ଘଡ଼ିଏ ଅନ୍ୟମନସ୍କ ଭାବରେ ଚାହିଁ ରହିଲା ମାଧବ ।

ଇତି ମଧ୍ୟରେ କିଛିଦିନ ବିତିଗଲା । ଶିଶିର ଆଉ ଘରକୁ ଟଙ୍କା ପଠାଇଲା ନାହିଁ କି ଘରକୁ ଆସିଲା ନାହିଁ । ଏତେଦିନ ଧରି ନ ଆସିବା ଫଳରେ ମାଧବର ମନଟା ଗୁଡେ଼ଇ ପୁଡେ଼ଇ ହେଲା । ଶେଷରେ ସେ ଭଲ ଦିନଟିଏ ଦେଖି ଶିଶିରପାଇଁ କିଛି ପିଠା ଏବଂ ବାଡ଼ିର ପିଜୁଳି ଓ ପଇଡ଼ ନେଇ ଶିଶିର ପାଖକୁ ଗଲା ।

ପଚାରି ପଚାରି ଯାଇ ଶିଶିର ରହୁଥିବା ଘରେ ପହଞ୍ଚିଲା । ତା ଘରେ ଥିବା ଅଫିସ ପିଅନ ମାଧବକୁ ଦେଖି ଘୃଣାରେ ନାକ ଟେକି ପଚାରିଲା- ଏ ବୁଢ଼ା, ଏଠିକି କାହିଁକି ଆସିଛୁ । କାହାକୁ ଖୋଜୁଛୁ ? ମାଧବ କହିଲା-ମୋ ଶିଶିର ପାଖକୁ ଆସିଛି । ଶିଶିର୍ ଘର ଏଇଟା ତ ? ମୁଁ ତା' ବାପା । ମାଧବ କଥା ଶୁଣି ମୁହଁ ମୋଡ଼ିଦେଲା ପିଅନଟା ।

ମାଧବକୁ ଘର ଭିତରକୁ ବି ଛାଡ଼ିଲା ନାହିଁ । କହିଲା-କୁଆଡ଼ୁ ଚୋର କି ପାଗଳଟାଏ କହୁଛି ବାବୁଙ୍କ ବାପା । ହଉ ତେବେ ସେଇଠି ବସିଥା, ବାବୁ ଆସିଲେ ଘରକୁ ଯିବୁ ।

ମାଧବର ଆଉ କିଛି ଉପାୟ ନଥିଲା । ବାଧ୍ୟ ହୋଇ ହେଇ ବାରଣ୍ଡାରେ ବସି ରହିଲା । ରାତି ୧୦ଟା ବାଜିଲା, ତଥାପି ଶିଶିର ଫେରିଲା ନାହିଁ । ୧୧ଟା ବାଜିଲା, ତଥାପି ଫେରିଲା ନାହିଁ । ମାଧବ ପୁଅକୁ ଦେଖାକରି ଆସିବାର ଫଳ ପାଇଗଲାଣି । ତାକୁ କସତେତେବେଳକୁ ବହୁତ ଖରାପ ଲାଗିଲାଣି । ତେବେ ଏତେ କଷ୍ଟ କରି ଆସିଛି ପୁଅକୁ ନ ଦେଖି ଫେରିଯିବ କେମିତି ? ପୁଅଟାକୁ ନ ଦେଖି ଗଲେ ତାକୁ କଣ ଭଲ ଲାଗିବ ? କମଳା ପଚାରିଲେ ତାକୁ କ'ଣ ଉତ୍ତର ଦେବ । ସାଢ଼େ ବାରଟ ବେଳକୁ ଟୋକିଏ ଜିପ୍ ଆଣି ଶିଶିରକୁ ଛାଡ଼ି ଦେଇଗଲା । ଉଠି ଛିଡ଼ା ହେଲା ମାଧବ । ମନଟା ତା'ର ଖୁସି ହୋଇ ଆସିଥିଲା । ଏତେଦିନ ପରେ ତା ପୁଅଟାକୁ ଟିକିଏ ଦେଖିବ । ହେଲେ ସେ ନିଜକୁ ବିଶ୍ୱାସ କରିପାରୁ ନ ଥିଲା । ପୃଥିବୀଟା ସତେ ଯେମିତି ଓଲଟ ପାଲଟ ହୋଇଗଲା ଭଳି ଲାଗୁଥିଲା ।

ଶିଶିର ଟଳି ଟଳି ଘରକୁ ଆସୁଥିଲା । ଏଁ ଶିଶିର ତେବେ ମଦ ପିଉଛି ? ବିଶ୍ୱାସ କରିପାରୁ ନ ଥିଲା ମାଧବ । ଟଳି ଟଳି

ବାରଣ୍ଡାକୁ ପାଦ ପକାଇଲା ଶିଶିର । ଏଣେ ଏଣେ କଣ୍ଠରେ କହିଲା- 'କିଏ ? କିଏ ସେଠାରେ ଠିଆ ହୋଇଛ ?' ମାଧବ ଆସି କହିଲା- 'କିଏ ଛୁଡ଼ା ହୋଇଛ ଚିହ୍ନି ପାରୁନୁ ।' ଦେହର ଭାରସାମ୍ୟ ରକ୍ଷା- କରି ଭଲଭାବେ ଠିଆ ହେବା ଅବସ୍ଥାରେ ନଥିଲା ଶିଶିର । ଆଖିକୁ ରଗିଲା ସ୍ୱରରେ ପଚାରିଲା, ମୁଁ ପଚାରୁଛି ପରା କିଏ ?' ମାଧବ ଆଗେଇ ଆସି ଶିଶିରକୁ ଠୋ କରି ଚାପୁଡ଼ାଟାଏ ଲଗାଇ ଦେଇ କହିଲା-'ଚିହ୍ନିପାରୁନୁ କିଏ ? ମୁଁ ତୁମର ସେହି ହତଭାଗା ବାପା ମାଧବ ସ୍ୱାଇଁ । କ୍ଲର୍କ ଅଫିସ ପିଅନ ।'

ତତେ ପାଠ ପଢ଼େଇ ମଣିଷ କରୁଥିଲି । ଅଫିସର କରେ- ଇଥିଲି । ବାପା ମାଆଙ୍କୁ ଭୁଲି ମଦ ଖାଇ ରାତି ଅଧକୁ ଟଳି ଟଳି ବସାକୁ ଫେରୁଛୁ । ଲାଜ ଲାଗୁନି । ଏତେଦିନ ହେଲା ଦେଖି ନଥିଲି ବୋଲି ଟିକିଏ ଦେଖିବାକୁ ଆସିଥିଲି ଯାହା ଦେଖିଲି, ମନ ପୂରିଗଲା । ଏବେ ଯାଉଛି ।'

'ତଳକୁ ଓହ୍ଲାଇ ଆସିଲା ମାଧବ । ଏମାନଙ୍କପାଟି ଶୁଣି ଘରୁ ଦଉଡ଼ି ଆସିଲା ପିଅନ । ମାଧବ ସେଠାରେ ଆଉ ମୁହୂର୍ତ୍ତେ ନ ରହି ଘର ଆଡ଼େ ମୁହାଁଇଲା ।

ଶିଶିରର ମଦ ନିଶା କୁଆଡ଼େ ଉଭେଇଗଲା । ସେ ନିଜର ଭୁଲ ବୁଝିପାରି ଅନୁତାପ କଲା ।

ତା ପରଦିନ ଛୁଟି ନେଇ ଘରକୁ ଆସି ତା ବାପା ମାଧବ ଗୋଡ଼ତଳେ ପଡ଼ି କ୍ଷମା ମାଗିଲା । କହିଲା-'ବାପା, ସାଙ୍ଗମାନଙ୍କ ସହ ମିଶି ମଦ ପିଉଥିଲି । ମୋତେ କ୍ଷମା କରିଦିଅନ୍ତୁ । ଆଉ ଜୀବନରେ ମଦ ପିଇବି ନାହିଁ ।

ମାଧବ ଶିଶିରକୁ କୁଣ୍ଢାଇ ଧରିଲା । ଆଖିରୁ ତାର ଦୁଇଧାର ଲୁହ ବହିଯାଉଥିଲା । ❋❋

# କର୍ମଫଳ

ପିଲାଟି ଦିନରୁ ଆଜଯାଏ ମୁଁ ମୋ ବୋଉଠାରୁ ଅନେକ ଗପ ଶୁଣିଛି । ଅନେକ ପୁରାଣ କାହାଣୀ ଶୁଣିଛି । ମୋ ବୋଉର ପୁରାଣ ସବୁ ମୁହେଁ ମୁହେଁ ମୁଖସ୍ଥ । ଗାଁ ସାହିର ସବୁ କଥାରେ ଭଲମନ୍ଦରେ ମୋ ବୋଉକୁ ଆସି ପଚରା ଉଚରା କରିଥାନ୍ତି । ବାହାଘର, ବ୍ରତଘର କିମ୍ବା ଅନ୍ୟାନ୍ୟ କିଛି ଶୁଭ କାର୍ଯ୍ୟରେ କିପରି କ'ଣ କରାଯାଏ, କେଉଁଠି କି କି ନିୟମ ମାନିବାକୁ ହୁଏ ମୋ ବୋଉଠାରୁ ସାହିର ଲୋକମାନେ ଆସି ଅନେକ ସମୟରେ ଉପଦେଶ ନେଇଥାନ୍ତି । ସତରେ ମୋ ବୋଉର କି ଶକ୍ତି ଅଛି କେଜାଣି, ସେ ବହୁତ କଥା ମନେ ରଖିପାରେ ।

ଆମ ପୂର୍ବ ପୁରୁଷମାନେ କେମିତି ଥିଲେ ତାଙ୍କର କର୍ମ-ଧାରା କିପରି ଥିଲା । ସେ ସବୁ ଟିକିନିଖି କଥା ବୋଉ ଆମକୁ ଥରେ ନୁହେଁ ବହୁବାର କହିଛି । ଆମ ପୂର୍ବ ପୁରୁଷମାନଙ୍କ ବୀରତ୍ୱପୂର୍ଣ୍ଣ କାହାଣୀରେ ମୁଁ ଯେତିକି ଖୁସି ହୁଏ ତାଙ୍କର ନିର୍ଦ୍ଦୟ ଏକଛତ୍ର ଶାସନ ବା ଯଥେଚ୍ଛାଚାରରେ ମୋ ମନ ତା'-ଠାରୁ ବେଶୀ ବଷେଇ ଉଠେ ।

ଆମ ପୂର୍ବ ବସତି ନାରୀ ଗାଁ ବଡ଼ ମୌଜାରେ ଥିଲା । ବିରାଟ ବଡ଼ ଗାଁ । କ୍ଷତ୍ରିୟ, ବ୍ରାହ୍ମଣ, କରଣ, ହରିଜନ, ଧୋବା,

ଭଣ୍ଡାରୀ ଆଦି ସବୁ ଜାତିର ଲୋକଙ୍କ ଅପୂର୍ବ ସମାବେଶର ଗୋଟିଏ ଗାଁ ।

ସେତେବେଳେ ଆମ ଦେଶକୁ ଇଂରେଜମାନେ ଶାସନ କରୁଥାନ୍ତି । ଜମିଦାରୀ ପ୍ରଥା ପ୍ରଚଳିତ ଥାଏ । ଆମ ପୂର୍ବ ପୁରୁଷ-ମାନେ ଜମିଦାରୀ ନିଲାମ ନେଇ ଥାଆନ୍ତି ।

ସେତେବେଳର ଜମିଦାରମାନଙ୍କର ପ୍ରଚଣ୍ଡ ଶକ୍ତି ବିଷ-ୟରେ ସମସ୍ତେ ଜାଣନ୍ତି । ଏମାନେ ସେଥିରୁ କେମିତି ବା ଅଲଗା ହୋଇଥାଆନ୍ତେ ?



ଟଙ୍କାର ଅଭାବ ନଥାଏ । ପ୍ରଜାମାନଙ୍କ ଖଜଣା ଟଙ୍କାରେ ବଡଲୋକ । ଏମାନଙ୍କ ନାଲିଆଖି ପାଖରେ ଗାଁର ପ୍ରଜାମାନେ ଭୟରେ ଥରହର ହେଉଥାନ୍ତି । ଦେଖିଲେ ଦଶ ହାତ ଆଗରୁ ସାଷ୍ଟାଙ୍ଗ ପ୍ରଣାମ କରନ୍ତି । ଆଜକାଲି ପରି ସମ୍ମାନ ସୂଚକ ବାବୁ

ସମ୍ବୋଧନ ହେଉଥିଲେ ନାହିଁ । ସେମାନଙ୍କୁ ଛାମୁ ସମ୍ବୋଧନ କରାଯାଉ। ଜମିଦାର ଓ ଜମିଦାର ବଂଶର ଲୋକମାନଙ୍କୁ ପ୍ରଜାମାନେ ସାଆନ୍ତ ବୋଲି ସମ୍ବୋଧନ କରୁଥିଲେ ।

ଏହି ପ୍ରବଳ ପ୍ରତିପତ୍ତି ଭିତରେ ବାସ କରୁଥିଲେ ସେମାନେ । ଠାକୁର ଘର କିମ୍ବା ଚଉପାଢ଼ୀରେ ପଶାଖେଳ ଅହରହ ଲାଗି ରହିଥିଲା । ଘୋଡ଼ାରେ ଚଢ଼ି ଗାଁ ଗାଁ ବୁଲୁଥିଲେ । ପ୍ରଜାମାନେ ଦଶହରା, ସୁନିଆଁ ଆଦିରେ ଆସି ନାନାଦି ଭେଟି ଦେଉଥିଲେ । କିନ୍ତୁ ସେମାନେ ପ୍ରଜାମାନଙ୍କ ଉପରେ ଖୁବ୍ ଅତ୍ୟାଚାର କରୁଥିଲେ । କରଭାରରେ ସାଧାରଣ ପ୍ରଜାମାନେ ଖୁବ୍ ନିର୍ଯ୍ୟାତିତ ହେଉଥିଲେ । ଖଜଣା ଦେବାରେ ସାମାନ୍ୟ ବିଳମ୍ବ ଘଟିଲେ ଏପରିକି ବିନା କାରଣରେ ମଧ୍ୟ ନିରୀହ ପ୍ରଜାମାନଙ୍କୁ ବେତ୍ରାଘାତ କରୁଥିଲେ । ତେଣୁ ସାଧାରଣ ଲୋକମାନେ ସର୍ବଦା ଭୟରେ ଡର ଡର ରହୁଥିଲେ ।

ପୂର୍ବରୁ ଯେଉଁମାନେ ଜମିଦାର ଗାଦି ଅଳଙ୍କୃତ କରୁଥିଲେ ସେମାନେ ସବୁ ବିଭିନ୍ନ ପଦପଦବୀ ଗ୍ରହଣ କରୁଥିଲେ– ଯଥା, ଚୌଧୁରୀ, ବଳିୟାର ସିଂହ, ଉତ୍ତର କବାଟ, ମହାପାତ୍ର ଓ ସୁନ୍ଦରାୟ ଇତ୍ୟାଦି । ସେହିପରି ଆମ ପୂର୍ବ ପୁରୁଷମାନଙ୍କ ମଧ୍ୟରେ ଯେ ବଡ଼ ଅଂଶ ସେ ଜମିଦାର ଭାବେ ରାଜଦଣ୍ଡ ଗ୍ରହଣ କରନ୍ତି ଓ ସେ ମହାପାତ୍ର ନାମରେ ଅଭିଷିକ୍ତ ହୋଇଥାନ୍ତି ।

ଦିନକର କଥା । ଜମିଦାର ମହାପାତ୍ରେ ପାଖ ଗାଁ ପାଲଟପୁରର ନିଧିଆ ନାମକ ଜଣେ ପ୍ରଜାକୁ ପିଆଦା ପଠାଇ ଡକାଇ

ଆଣିଲେ । ତା'ର କିଛି ଖଜଣା ବାକିଥିଲା । ବହୁତ ଗୁଡ଼ାଏ ପିଲାଛୁଆ । ଠିକ୍ ସମୟରେ ଖଜଣା ପରିଶୋଧ କରିପାରି ନଥିଲା । ତେଣୁ ତାକୁ ଖୁବ୍ ମାଡ଼ଦେଇ କହିଲେ-ଦୁଇ ଦିନ ମଧ୍ୟରେ ତୋର ଯେତେସବୁ ବାକୀ ଖଜଣା ଆଣି ନଦେଲେ ତୋର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ନିଲାମ କରି ଦିଆଯିବ । ନିଧିଆ କାନ୍ଦି କାନ୍ଦି ଭୟରେ କହିଲା-ଏତେଗୁଡ଼ାଏ ଟଙ୍କା ଦୁଇଦିନ ଭିତରେ କେଉଁଠୁ ପାଇବ ଆଜ୍ଞା ! କୌଣସି ମୂଲ ମଜୁରୀ ତ ମିଳୁନାହିଁ । ମୋର ଏତେଗୁଡ଼ାଏ ପିଲାଛୁଆ, ମରିଯିବୁ ଆଜ୍ଞା ! ମୋତେ ଟିକିଏ ସମୟ ଦିଅନ୍ତୁ । ମୁଁ ଜମି ଖଣ୍ଡିକ ବକ ଆପଣଙ୍କ ସବୁ ଖଜଣାତକ ଆଣି ଦେଇଦେବ ।



କିନ୍ତୁ ଜମିଦାର ମହାପାତ୍ରେ ସେ ସବୁ ଶୁଣିବାକୁ ନାରାଜ । ଗର୍ଜନଛାଡ଼ି କହିଲେ-ଯାହା କହିଲ ତାହା ହିଁ ମୋ ନିଷ୍ପତ୍ତି ।

ଦୁଇଦିନ ଭିତରେ ଖଜଣା ନଦେଲେ ତୋର ଜମି ଘରଡ଼ିହ ସବୁ ସବୁ ନିଲାମ କରାଇଦେବ ।

ସତକୁ ସତ ତାହାହିଁ ହେଲା । ଉକ୍ତ ନିଗାଡ଼ି ଯେଉଁ ଜମିକୁ ନିଜର କରି ଗତର ଖଟାଇ ଧାନ ଅମଳ କରୁଥିଲା ସେହି ପାଟ ଜମି ଦୁଇଖଣ୍ଡ ଅଧା ଦାମ୍‌ରେ ଖଜଣା ବାବଦକୁ ନିଲାମ କରାଇ ନେଇଗଲେ ମହାପାତ୍ରେ । ନିଧିଆ କାନ, ମୁଣ୍ଡ ଆଉଁସି ରହିଲା । ନିଧିଆର ମା' ବୁଢ଼ୀ କାନ୍ଦି କାନ୍ଦି ଅଭିଶାପ ବର୍ଷଣ କଲା—ଆମ ଗରିବଙ୍କ ଉପରେ ଏତେ ଅତ୍ୟାଚାର କରି ଯେମିତି ଜମି ଖଣ୍ଡିକ ଛଡ଼ାଇ ନେଲା, ସେଇମିତି ତା' ଧନ କିଏ ଛଡ଼େଇ ନେଉ ।



ମାସଟିଏ ଯାଇ ନାହିଁ । ବୁଢ଼ୀର ଅଭିଶାପ ସତକୁ ସତ ଫଳିଗଲା । ମହାପାତ୍ରଙ୍କ ପାଖରେ ଦୁଇଜଣ ଦାଢ଼ିଆ ବାବାଜୀ ଆସି ଗତ ଭବିଷ୍ୟତ କଥା ବେଶ୍ କହି ମହାପାତ୍ରେଙ୍କୁ ଭୁଲେଇ ଦେଲେ । ମହାପାତ୍ରେ ସେମାନଙ୍କୁ ଅତିଥି କରି ଦୁଇ ଦିନ

ରଖାଇଲେ । ଆମ ଠାକୁର ଘରଟା ଏକପଟିଆ । ଘରଠୁଁ ଅଲଗା । ସେଇଠି ବାବାଜୀ ରହିଲେ ।

ବାବାଜୀ ମହାପାତ୍ରେଙ୍କ ମନ ଖୁସି ଥିବା ସମୟ ଦେଖି କହିଲେ–ଆଜ୍ଞା ମନ୍ତ୍ର ବଳରେ ଗୋଟାକୁ ଦୁଇଟା ଆମ୍ଭେ କରି–ଦେଇପାରୁ । ମହାପାତ୍ରେ ମଧ୍ୟ ବିଶ୍ୱାସ କରିଗଲେ । ତେଣୁ ଗୋଟାଏ ବାକ୍ସଭର୍ତ୍ତି ସୁନା ଆଣି ଦେଲେ । କହିଲେ ଏହାକୁ ଦୁଇ ବାକ୍ସ କରିଦେଇ ପାରିବ ? ସଙ୍ଗେ ସଙ୍ଗେ ହସି ହସି ବାବାଜୀମାନେ ରାଜି ହୋଇଗଲେ । ବାବାଜୀଙ୍କ ନିର୍ଦ୍ଦେଶରେ ସେହି ରାତିରେ ଠାକୁର ଘରେ ପୂଜା, ନୃତ୍ୟ ଆଦି ମହା ସମାରୋହରେ ଅନୁଷ୍ଠିତ ହେଲା । ବାବାଜୀ କହିଲେ–ଆପଣ ଯାଆନ୍ତୁ ଆପଣଙ୍କ ଶୋଇବା ଘରେ ବାମ କଡ ମାଡ଼ି ଶୋଇଥିବେ । ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ବିଛଣା ଛାଡ଼ିବେ ନାହିଁ ।

ମହାପାତ୍ରେ ହଁ ଭରି ଯାଇ ଆନନ୍ଦରେ ଶୋଇପଡ଼ିଲେ । ମହାପାତ୍ରେ ଓ ତାଙ୍କ ପତ୍ନୀଙ୍କର ତ ସୁନାର ମୋହ ଲାଗିଛି । ବାକ୍ସେକ ସୁନା ଦୁଇବାକ୍ସ ହେବ । ତେଣୁ ସକାଳୁ ଉଠି ସିଧା ମୁହଁ ଧୋଇ ଠାକୁର ଘରଆଡ଼େ ଧାଇଁଲେ ମହାପାତ୍ରେ ।

ଠାକୁରଘର ପୂଜାରୀ ନନ୍ଦା କାନ୍ଦି କାନ୍ଦି ଆସି କହିଲା–ସବୁ ସରିଗଲା ଆଜ୍ଞା, ସବୁ ସରିଗଲା ! ଜଣା ନାହିଁ ଶୁଣା ନାହିଁ କୁଆଡୁ ଦି'ଟା ବାବାଜୀ ଆସିଲେ ଯେ ଆପଣ ତାଙ୍କୁ ଠାକୁର ଘରେ ରଖାଇ ଦେଲେ । ମୁଁ ଆସି ସକାଳୁ ଦେଖିଲାବେଳକୁ ଏବେ ଠାକୁରଘରେ କେହି ନାହାନ୍ତି । ଠାକୁରଘର ମେଲା । ଠାକୁରଙ୍କ ରାଜମୁକୁଟ ବି ନାହିଁ ।

ମହାପାତ୍ରେ ସତେ ଯେମିତି କାଠ ପାଲଟି ଗଲେ । ମୁହଁରୁ କଥା ବାହାରିଲା ନାହିଁ ।



ସୁନା ବାକ୍ସ ଗଲା ତା' ସାଙ୍ଗରେ ଠାକୁରଙ୍କ ସୁନା ମୁକୁଟ ବି ଗଲା । ଆଃ କି ଦୁର୍ଯୋଗ ! ସତେ ଯେମିତି ଅଲକ୍ଷ୍ୟରେ ଅଦୃଶ୍ୟରୁ କିଏ କହି ଦେଉଥିଲା—ଦୁଃଖ କରିବାର କିଛି ନାହିଁ ତାହାହିଁ ତ ତୁମର କର୍ମ ଫଳ, ଗରିବ ଲୋକର ରକ୍ତ ଶୋଷଣ କରି ଯାହା ସଞ୍ଚୟ କରିଛ, ତାହା ସେହିଭଳି ଯିବନି ତ ଆଉ ଯିବ କେମିତି ?



# ସବୁ ଜଣାକର ଖେଳ

ହଠାତ୍ ରାଜା ବିକ୍ରମ ସିଂହଙ୍କର ଗୃଉଁକନା ନିଦଷ୍ଟା ଭାଙ୍ଗି-ଗଲା । ଆଖି ମଳି ମଳି ତୁଳିତଳିପଭରୁ ଗଜଦନ୍ତ ପଲଙ୍କ ଉପରେ ଉଠି ବସିଲେ ସେ । ଏଁ ଏ କ'ଣ ? ଏପରି ସ୍ୱପ୍ନ ଦେଖିଲେ କାହିଁକି ? ଦୀର୍ଘ ସମୟ ଧରି ବସି ରହିଲେ ବିଛଣାରେ । ସ୍ୱପ୍ନ ବିଷୟରେ କେତେ କ'ଣ ଚିନ୍ତା କରିବାକୁ ଲାଗିଲେ । ଅସ୍ପଷ୍ଟ



ସ୍ୱରରେ ରାଜା ମଧ୍ୟ କଣ ମନକୁ ମନ ଉଚ୍ଚାରଣ କରି ଯାଉ-ଥିଲେ । ଏହି ସମୟରେ ରାଣୀଙ୍କର ମଧ୍ୟ ନିଦ ଭାଙ୍ଗିଗଲା । ପାଖରେ କିନ୍ତୁ ଶିଶୁ ପୁଅଟି ନିଦ୍ରା ଯାଇଛି ଅନାବିଳ ଭାବରେ ।

ରାଣୀ ଦେଖିଲେ ଯେ ରାଜା ବସି କ'ଣ ଭାବୁଛନ୍ତି । ସେ ବିସ୍ମିତ ହୋଇ ପଚାରିଲେ-କଣ ହେଲା ମହାରାଜ ? ଆପଣ ଏପରି ବସି ବସି କ'ଣ ଭାବୁଛନ୍ତି ? ରାଜା ଅନ୍ୟମନସ୍କ ଭାବରେ ଉତ୍ତର ଦେଲେ-ନା, ରାଣୀ ! ହଠାତ୍ ମୁଁ ଗୋଟାଏ ସ୍ୱପ୍ନ ଦେଖିଲି, ଏ ଦୁଃସ୍ୱପ୍ନର କାରଣ ମୁଁ ଜାଣିପାରୁନି । ତା ଛଡ଼ା ସ୍ୱପ୍ନରେ ଯେ କେତେ ସତ୍ୟତା ଅଛି ତାହା ମଧ୍ୟ ମୁଁ ଭାବି ପାରୁନି ।

ରାଜାଙ୍କ କଥା ଶୁଣି ରାଣୀ କହିଲେ-ମହାରାଜ, ସ୍ୱପ୍ନ ବି ଅନେକ ସମୟରେ ସତ ହୋଇଥାଏ ! ରାଜା ଉତ୍କ୍ଷିପ୍ତ ହୋଇ କହିଲେ-କିନ୍ତୁ ମୋର ଏ ସ୍ୱପ୍ନ କେବେ ହେଲେ ସତ ହୋଇ ନପାରେ ।

ରାଜାଙ୍କର ଏ ଅବସ୍ଥା ଦେଖି ରାଣୀ ଟିକିଏ ଭୟଭୀତା ହୋଇପଡ଼ି ପଚାରିଲେ - ଆପଣ ଏମିତି କି ସ୍ୱପ୍ନ ଦେଖିଲେ ଯେ ?

ରାଜା ଅସ୍ଥିର ଭାବେ କହି ଉଠିଲେ - ମୁଁ ସ୍ୱପ୍ନ ଦେଖିଲି ଯେ, ମୋତେ କିଏ ଅଦୃଶ୍ୟରେ କହୁଛି··ଶୁଣ ରାଜା, ତୁମେ ମହାଭାଗ୍ୟବାନ । ତୁମ ପାଖରେ ତୁମର ଯେଉଁ ପ୍ରଥମ ସନ୍ତାନ ଶିଶୁଟିଏ ଶୋଇଛି, ସେ ବଡ଼ହେଲେ ଜଣେ ବଡ଼ ବିଷ୍ଣୁ ଭକ୍ତ ହେବ । ତା କଥାରେ ବିଷ୍ଣୁ ବି ଉତ୍ତର ଦେବେ । ସେ ଯାହା ଚାହିଁବ ଅକ୍ଳେଶରେ ତା' କରିପାରିବ ।

ରାଣୀ ଅତ୍ୟନ୍ତ ଆନନ୍ଦିତହୋଇ କହିଲେ, ତା ହେଲେତ ଅତି ସୌଭାଗ୍ୟର କଥା । ଆମ ପୁଅ ବିଷ୍ଣୁଭକ୍ତ ହେବ, ଜଗ-ତରେ ଆମର ନା ରହିବ । ରାଜା ରାଣୀଙ୍କ କଥାରେ ରାଗିଯାଇ କହିଲେ-ଏଁ କଣ କହିଲ? ତୁମେ ବୀର ବିକ୍ରମସିଂହଙ୍କ ଧର୍ମପତ୍ନୀ

ଛଥା ଏ ଅବନ୍ତୀ ରାଜ୍ୟର ମହାରାଣୀ ହୋଇ ଏକଥା କହିପାରୁଛ? ରାଜା ପୁଅ ରାଜା ନହୋଇ ହେବ ଗୋଟାଏ ଭକ୍ତ ! ଗୋଟାଏ ସେବକ ?

ମହାରାଣୀ ରାଜାଙ୍କ ମନକଥା ଜାଣିପାରି କୌଣସି ଯୁକ୍ତି ନକରି ନୀରବ ରହିଲେ । ତାପରେ ପୁଣି ରାଜା ଆରମ୍ଭ କଲେ, ତୁମେ କଣ ଭାବୁଥିଲ ମୁଁ ଏ ସ୍ୱପ୍ନରେ ଖୁସି ହୋଇଥାନ୍ତି ? ଏତେବଡ଼ ସାମ୍ରାଜ୍ୟର ଅଧିପତି ମୁଁ । ମୋ ନାମ ଶୁଣି



ମାତ୍ରକେ ପ୍ରବଳ ପରାକ୍ରମୀ ରାଜାମାନେ ଥରହର ହୁଅନ୍ତି । ତାର ପୁତ୍ର ହେବ ପୁଣି ବିଷ୍ଣୁ ଭକ୍ତ . . . ହାଃ. . . ହାଃ । ତାହା କେବେ ହୋଇ ପାରେନା । ଏ ସ୍ୱପ୍ନ ଭୁଲ । ଏ ଧାରଣା ଭୁଲ । ମୋର ପ୍ରଥମ ପୁତ୍ର ହେବ ମୋ ରାଜ୍ୟର ମଉଡ଼ମଣି । ଏ ରାଜସିଂହାସନର ଭାବି ଉତ୍ତରାଧିକାରୀ ।

ରାଣୀ ଅନ୍ୟ ଉପାୟ ନ ଦେଖି ଅବସ୍ଥାକୁ ସୁଧାରିବା ପାଇଁ ବାଧ୍ୟ ହୋଇ କହିଲେ–ହେଉ, ପୁଅ ଯାହା ହେବ ଦେଖାଯିବ। ଆପଣ କିଛି ଚିନ୍ତା ଗସ୍ତ କରନ୍ତୁ । ଯେତେ ବଳକୁ ରାତି ପାହି ଆସିଥିଲା, ରାଜା ଉଠି କାହାକୁ କିଛି ନ କହି ଚାଲି ଆସିଲେ ।

କ୍ରମଶଃ ଶିଶୁପ୍ରକୃତି ବଡ଼ ହେଲା । ଶାସ୍ତ୍ର ବିଦ୍ୟାରେ ଶିକ୍ଷା ପାରଙ୍ଗମ ହେଲା । ଶୈଶବରୁ କୈଶୋରକୁ ପଦାର୍ପଣ କଲା । କିଶୋର ଅବସ୍ଥାରେ ଯେତେବେଳେ ଅସ୍ତ୍ର ଶସ୍ତ୍ର ଶିକ୍ଷା ଦିଆଗଲା, ସେ ତାହା ବିଶେଷ ଗ୍ରହଣ କରିପାରିଲା ନାହିଁ । ବରଂ ଧର୍ମ ଆଡ଼କୁ ପ୍ରଭାବିତ ହେଉଥିଲା । ତାର ଏ ପ୍ରକାର ମନୋଭାବ ଲକ୍ଷ୍ୟକରି ରାଣୀ ସବୁକଥା ଜାଣି ପାରୁଥିଲେ ମଧ୍ୟ କାହାକୁ କିଛି ନ କହି ନୀରବ ଥିଲେ । କିନ୍ତୁ ରାଜା ଯେତେବେଳେ ଅସ୍ତ୍ର ଗୁରୁଙ୍କଠାରୁ ଜାଣିଲେ ଯେ କୁମାର ଅସ୍ତ୍ର ଶିକ୍ଷାରେ ମନଯୋଗ ଦେଉ ନାହାନ୍ତି ସେତେବେଳେ ସେ ପୁଅକୁ ଡକାଇ କହିଲେ, କୁମାର ! ତୁ ହେଉଛୁ ଏ ସାମ୍ରାଜ୍ୟର ଅଧିକାରୀ । ତୁ ହେବୁ ଏଠି ରାଜଚକ୍ରବର୍ତ୍ତୀ । ଅସ୍ତ୍ରବିଦ୍ୟା ଅଭ୍ୟାସ ନ କଲେ ରାଜ୍ୟ ଜୟ କରିବୁ କିପରି ?

କୁମାର ହସି ହସି କହିଲେ, ନା, ପିତା ରାଜ୍ୟଜୟ ମୋର ଆବଶ୍ୟକ ନାହିଁ । ସିଂହାସନର ମୋହ ମୋତେ ଆକର୍ଷଣ କରିପାରୁନାହିଁ । ବରଂ ମୋ ଆଖି ଆଗରେ ନାଚି ଯାଉଛି ସେହି ଦୁଇଟା କଳା କଳା ଚକାଆଖି । ଜଗନ୍ନାଥଙ୍କର ଅପୂର୍ବ ରୂପ ମୂର୍ତ୍ତି ମୋତେ ଯେପରି ସବୁବେଳେ କହୁଛି, ଆ, ଚାଲିଆ ଏଠିକି । ତୋ ସେବା ପାଇବା ପାଇଁ ମୁଁ ଘର ଏଠି କରିଛି ବସିଛି । ଏଠି କ'ଣ ତୋର ଖାଇବାକୁ ଅଭାବ ହେବ ? ଏଠି ଘରା ଛପନ ପଉଟି ଭୋଗ ରନ୍ଧା ହେଉଛି ।

କୁମାରଙ୍କର ଏ ପ୍ରକାର ଉତ୍ତର ଶୁଣି ରାଜା କ୍ରୋଧ ଜର୍ଜର ହୋଇ ଗର୍ଜନ ଛାଡ଼ି କହିଉଠିଲେ—କ'ଣ କହିଲୁ; ତୁ ତେବେ ବୀର ବିକ୍ରମ ସିଂହର ପୁତ୍ର ହୋଇ ତୁ ଯିବୁ ଜଗନ୍ନାଥଙ୍କର ଚରଣ ସେବା କରିବାକୁ ? ନା, ତା କେବେ ହୋଇ ପାରିବ ନାହିଁ ।



ଆଉ ଥରେ ଯଦି ମୁଁ ତୋ ମୁହଁରୁ ଏ କଥା ଶୁଣେ, ତା ହେଲେ ମୁଁ ଆଉ ତୋତେ ଭକ୍ତ ହେବାକୁ ଦେବିନି ବରଂ ତୋତେ ଦେବି ଚରମ ଶାସ୍ତି ।

ରାଜା କ୍ଷିପ୍ର ଗତିରେ ସେ ସ୍ଥାନ ପରିତ୍ୟାଗ କରି ଚାଲି-ଗଲେ ।

କୁମାର ମା'ଙ୍କ ପାଖକୁ ଫେରି ଆସି ସବୁ କଥା କହିଲେ । ରାଣୀ କୁମାରଠାରୁ ସବୁ କଥା ଶୁଣି କେବଳ ଆଖିରୁ ଲୁହ ଗଡ଼ାଇଲେ ସିନା ହେଲେ ତାଙ୍କର ବା ଆଉ କର୍ତ୍ତବ୍ୟ କ'ଣ ଥିଲା ।

ଆଉ ଦିନକର କଥା । ରାଜା କୁମାରଙ୍କର କୌଣସି ମନୋଭାବ ପରିବର୍ତ୍ତନ ନ ହେବା କଥା ଶୁଣି ପାଟକୁ ଡକାଇ କହିଲେ—ଏତେ କଥା ପରେ ମୁଁ ଜାଣୁଛି ତୋର କୌଣସି ପରିବର୍ତ୍ତନ ହୋଇନାହିଁ । ବର୍ତ୍ତମାନ ନିଜେ ସିଦ୍ଧାନ୍ତ କରି କହ, କ'ଣ ତୁ ରାଜ୍ୟ ଚାହୁଁ ନା ଧର୍ମ ଚାହୁଁ ?

କୁମାର ସଙ୍ଗେ ସଙ୍ଗେ ନିର୍ଭୀକଭାବେ କହି ପକାଇଲେ-ମୁଁ ଧର୍ମ ଚାହେଁ । ଧର୍ମକୁ ଉପେକ୍ଷା କରି କେହି କେବେ ବଡ଼ ହୋଇନାହିଁ । ବିଷ୍ଣୁଙ୍କ ପଦପଙ୍କଜ ଠାରୁ ଏ ରାଜ୍ୟ, ଏ ଧନ, ସବୁ



ମୋଠାରେ ତୁଚ୍ଛ, ମୂଲ୍ୟହୀନ । ମଣିଷ ଜୀବନ ଚିରସ୍ଥାୟୀ ନୁହେଁ, ଏ ଧନ, ରାଜ୍ୟ କ'ଣ ହେବ ? ପୃଥିବୀରେ ପ୍ରକୃତ ସତ୍ୟକୁ ଚିହ୍ନି ପାରିବ, ସେହିଁ ପ୍ରକୃତରେ ମହତ ।

ରାଜା କୁମାରଙ୍କର କଥା ଶୁଣି ଆଉ କ୍ରୋଧ ସମ୍ବରଣ କରିନପାରି ଡାକ ଛାଡ଼ିଲେ । ପ୍ରହରୀ ! ଶୀଘ୍ର ଘାତକକୁ ଡକାଅ । କ୍ଷଣକ ମଧ୍ୟରେ ଏହାକୁ ଶୁଳିଦାନ କରି ଏହାର କଟା ମୁଣ୍ଡ ଓ ରକ୍ତ ଆଣି ମୋ ନିକଟରେ ପ୍ରଦାନ କରୁ । ପୁଣି ପାଗଳ ପରି ପ୍ରଳାପ କରି କହିଲେ-ଏଁ, ଗୋଟାଏ ରାଜାର ପୁଅ ହୋଇ କହୁଛି, ଯାଇ ହେବ ଭିକାରୀ । ନା, ନା, ତା ଲଦାପି କରାଇ ଦେବିନି । ନା, ନା, ଘାତକ ଆସିବା ଦରକାର ନାହିଁ । ମୁଁ ନିଜେ ମୋର ଏହି ଶାଣିତ ତରବାରୀରେ ହିଁ ତାକୁ ହତ୍ୟା କରିବ । ଇତିହାସରେ ଚିରକାଳ ଲେଖା ହୋଇ ରହିବ ।

ଏହା କହି ନିଜ ତରବାରୀ କୁମାରଙ୍କ ଉଦ୍ଦେଶ୍ୟରେ ଉତ୍ତୋଳନ କରନ୍ତେ ସଙ୍ଗେ ସଙ୍ଗେ ସେଇଠି ଢଳିପଡ଼ିଲେ । ଚାରିଆଡ଼ ଅନ୍ଧକାର ହୋଇଗଲା । ହଠାତ୍ କେଉଁଠୁ ଗୋଟାଏ କିଏ କଳା ପୋଷାକ ପିନ୍ଧି ଘୋଡ଼ା ଦୌଡ଼ାଇ ସେଠାରେ ଆସି ପହଞ୍ଚି କୁମାରଙ୍କୁ ଘୋଡ଼ାରେ ବସାଇ କ୍ଷିପ୍ର ଗତିରେ ଛୁଟିଗଲା । ସମସ୍ତ ପ୍ରଜାବର୍ଗ ଓ ରାଜପରିଷଦ ନିସ୍ତବ୍ଧ ନିର୍ବାକ୍ ହୋଇ ଚାହିଁ ରହିଥିଲେ ।

ଅଦୃଶ୍ୟ ବିଶ୍ୱ ନିୟନ୍ତାଙ୍କ ଶକ୍ତି ପାଖରେ ଆଉ କାହାର ବା ଶକ୍ତି ଅଛି ।





# ରବିବାର

ସେଦିନ ହୋଇଥାଏ ରବିବାର । ଟି. ଭି.ରେ ରାମାୟଣ ଦେଉଥାଏ । ସଭିଏଁ ଅନେଇଥାନ୍ତି କେତେବେଳେ ସକାଳ ୯-୩୦ମି. ହେବ । ରାମାୟଣର ରହସ୍ୟମୟ କୌତୂହଳ ଅଭିନୟ ସବୁ ଦେଖିବେ । ସେହି ସମୟ ଭିତରେ ସମସ୍ତେ ସବୁକାମ ବନ୍ଦକରି ଆସି ଟି. ଭି. ଆଗରେ ବସିଯାଆନ୍ତି । ପିଲାଠାରୁ ବୁଢ଼ାଯାଏ. ସମସ୍ତଙ୍କର ରାମାୟଣ ଦେଖିବା ନିଶା ବଢ଼ିଯାଇଥାଏ ।

ସମରବାବୁ ଜିଲ୍ଲା ବିଦ୍ୟାଳୟର ପ୍ରଧାନ ବିଦ୍ୟାପତି । ତାଙ୍କର ତିନୋଟି ଝିଅ ଓ ଗୋଟିଏ ପୁଅ । ବଡ଼ ଦୁଇ ଝିଅ କଲେଜରେ ପଢ଼ନ୍ତି । ସାନଝିଅ ହାଇ ସ୍କୁଲରେ ପଢ଼େ । ପୁଅଟି ମାତ୍ର ଆଠ ବର୍ଷର । ତୃତୀୟ ଶ୍ରେଣୀରେ ପଢ଼େ ।

ସେଦିନ ସମରବାବୁ ତାଙ୍କ ପଢ଼ାଘରେ ବସି କ'ଣ ଲେଖୁ-ଥିଲେ । ବଡ଼ଝିଅ ମାମିନା ଡାକିଲା - ବାପା, ରାମାୟଣ ଆରମ୍ଭ ହେଲା, ଦେଖିବେନି ?

ସମର ବାବୁଙ୍କର ପୁରାଣ ଶୁଣିବାକୁ ଦେଖିବାକୁ ଭାରି ଆଗ୍ରହ । ବିଶେଷ କରି ଟିଭି ର ଏହି ରାମାୟଣ ସେ ଧାରାବାହିକ ଭାବେ ଅତି ଆବେଗର ସହ ଦେଖି ଆସୁଛନ୍ତି । ତେଣୁ ମାମିନା କଥାଶୁଣି ଲେଖା ଛାଡ଼ି ଉଠି ଆସିଲେ ବୈଠକଖାନାକୁ ।

ସେଦିନ ଥିଲା ରାମାୟଣରେ "ଇନ୍ଦ୍ରଜିତ ବଧ" । ସମସ୍ତେ ଏକାମନ ଏକାଗ୍ରତାରେ ଦେଖୁଥାନ୍ତି । ଇନ୍ଦ୍ରଜିତ ପରି ମହାବୀରକୁ ଲକ୍ଷ୍ମଣ କିପରି ସହଜରେ ନିହତ କଲେ — ସମସ୍ତେ ଚକିତ ହେଉଥା'ନ୍ତି ।

ରାମାୟଣ ସରିଲା । ରାମାୟଣ ବିଷୟରେ ସମସ୍ତେ ହସଖୁସି ହେଉଥାନ୍ତି । ସମରବାବୁ ଦେଖିଲେ ସେଠାରେ ଘରର ସମସ୍ତେ ଅଛନ୍ତି, ହେଲେ ତାଙ୍କ ପୁଅ ଟୁଟୁ ନାହିଁ । ଚାରିଆଡ଼େ ଖୋଜା-ପଡ଼ିଲା । ଟୁଟୁ ଟୁଟୁ ବୋଲି ସମରବାବୁ ଡାକ ଛାଡ଼ିଲେ । କିନ୍ତୁ ଟୁଟୁ କାହିଁ ?

ଘର ଛାଡ଼ି ପାଖ ରାସ୍ତା ଛକକୁ ଦେଖିବାକୁ ଗଲେ ସମର ବାବୁ । ଛକରୁ ଚାହିଁ ଦେଖିଲେ ଟୁଟୁ ଓ ତାଙ୍କ ସାଙ୍ଗ ଦୀପୁ ଉତ୍ତର ପଟୁ ଆସୁଛନ୍ତି । ପାଖକୁ ଆସିବା ପରେ ସମର ବାବୁ ପଚାରିଲେ, କିରେ ଟୁଟୁ ! କାହାକୁ କିଛି ନ କହି କୁଆଡେ଼ ଯାଇଥିଲୁ ?

- ଯାଇଥିଲି ମୋ ସାଙ୍ଗମାନଙ୍କୁ ନିମନ୍ତ୍ରଣ କରି ଆଣିବାକୁ ! ହସି ହସି ଉତ୍ତର ଦେଲା ଟୁଟୁ ।

- ନିମନ୍ତ୍ରଣ ? କିରେ କି ନିମନ୍ତ୍ରଣ ? ପ୍ରଶ୍ନ କଲେ ସମର ବାବୁ ।

- ଆଜ ପରା ମୋ ଝିଅ ବାହାଘର ।

- ତୋ ଝିଅ ବାହାଘର ?

- ହଁ ।

- ଯୁନିଟ୍ ଚର ମୋ ସାଙ୍ଗ ବିକାଶର ପୁଅ ସହିତ ମୋ ଝିଅର ବାହାଘର ।

ଟୁଟୁର କଥା ଶୁଣି ହସି ଉଠିଲେ ସମର ବାବୁ ।



ପୁଣି ପଚାରିଲେ- ଆରେ ଆଜ ଯଦି ତୋ ଝିଅ ବାହାଘର, ତେବେ କାହିଁ ତୋର ବାହାଘର ଆୟୋଜନ କାହିଁ ?

- କି ଆୟୋଜନ ?

- ଏଇ ସଜାସଜ, ଭୋଜଭାତ କାହିଁ ?

ସମରବାବୁଙ୍କ କଥାରେ ହସିଉଠି ଟୁଟୁ କହିଲା - ଆପଣ ଏ କ'ଣ କହୁଛନ୍ତି ବାପା ? ସରକାରୀ ନିୟମ ହୋଇଛି ଅଯଥା ଆଡ଼ମ୍ବର, ଭୋଜଭାତ, ବିବାହ, ବ୍ରତ ଆଦିରେ କରିବାକୁ ତ

ମନା, ପୁଣି ଏକଥା କହୁଛନ୍ତି କେମିତି ? ସେଇଥି ପାଇଁ ଆମେ ନିରାଡ଼ମ୍ବର ସହକାରେ ବାହାଘର କରୁଛୁ ; ତା' ପୁଅକୁ ମୋ ଝିଅ । ସାତ ଆଠଜଣ ବରଯାତ୍ରୀ ଆସିବେ । ବାହାଘର ସରି-ଯିବ । ବରକନ୍ୟାଙ୍କୁ ନେଇ ସେମାନେ ଚାଲିଯିବେ ।

– ଆଉ ଯୌତୁକ ? ଯୌତୁକ ତ କିଛି ଯୋଗାଡ଼ କରିନୁ ? ସମରବାବୁ ହସି ହସି ପଚାରିଲେ ।

– ଆପଣ ପରା ନିଜେ କହିଥିଲେ ଯେଉଁମାନେ ଯୌତୁକ ଦାବି କରିବେ, ଆଉ ଯେଉଁମାନେ ଯୌତୁକ ଦେବେ ଉଭୟେ ଦୋଷୀ । ସେମାନଙ୍କୁ ନିୟମ ଅନୁସାରେ ଦଣ୍ଡ ମିଳିବ । ତେଣୁ ଆମର ନଯୌତୁକ ନାହିଁ । ମୁଁ ମାଆଙ୍କ ପାଖରେ କୋଡ଼ିଏ ଟଙ୍କା ରଖିଛି । ସେଥିରେ ଆମେ ଏକାଠି ଜଳଖିଆ ଖାଇନେବୁ ।



ଟୁଟୁ କଥା ଶୁଣି ହସି ହସି ଗଡ଼ିଗଲେ ସମରବାବୁ । କହିଲେ – ହଉ ହଉ ତୁ ଘରକୁ ଯା । ତୋର ଏ ଆଦର୍ଶ ବାହାଘରରେ ମୁଁ ବହୁତ ଖୁସି । ❋❋